ଯୋଗୀନ୍ଦ୍ର ପଟ୍ଟନାୟକଙ୍କ

# ପଡ଼ନ୍ତ ରୌଦ୍ର ଓ ବନାନୀର ମାୟା ଏବଂ ଅନ୍ୟାନ୍ୟ ଗଳ୍ପ



ଯୋଗୀନ୍ଦ୍ର ପଟ୍ଟନାୟକଙ୍କ

# ପଡ଼ନ୍ତ ରୌଦ୍ର ଓ ବନାନୀର ମାୟା

# ଏବଂ ଅନ୍ୟାନ୍ୟ ଗଳ୍ପ

ସଂକଳକ :

ସନ୍ତୋଷ ବେଜ୍


ସାହିତ୍ୟ ସଂଗ୍ରହ ପ୍ରକାଶନ

ଗୋପାଳପୁର, କଟକ-୭୫୩୦୧୧

ପଡ଼ନ୍ତ ରୌଦ୍ର ଓ ବନାନୀର ମାୟା ଏବଂ ଅନ୍ୟାନ୍ୟ ଗଳ୍ପ – ସଂକଳକ : ସନ୍ତୋଷ ବେଜ୍, ପ୍ରକାଶକ : ସାହିତ୍ୟ ସଂଗ୍ରହ ପ୍ରକାଶନ, ଗୋପାଳପୁର, କଟକ-୭୫୩୦୧୧, ପ୍ରଚ୍ଛଦ : ବିଜୟ ପ୍ରଧାନ, ଡି.ଟି.ପି. : ଓମ୍ ଡିଟିପି ସେଣ୍ଟର, କଟକ, ମୁଦ୍ରଣ : ରୁବି ଅଫ୍‌ସେଟ୍, କଟକ ।



**Padanta Roudra O Bananira Maya Ebang Anyanya Galpa** Compiler Santosh Vej, Publisher : Sahitya Sangraha Prakashan, Gopalpur, Cuttack-753011, Odisha (India), Artist : Bijaya Pradhan, D.T.P. by : Omm DTP Centre, Cuttack, Printer : Rubby Offset, Cuttack.



First Edition : 2016 ISBN 81-8246-048-4

Price : **₹ 95**

# ମୁଖବନ୍ଧ

ସ୍ୱାଧୀନୋତ୍ତର ଓଡ଼ିଆ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଯେଉଁ କେତେଜଣ ଗାଳ୍ପିକ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରନ୍ତି ତନ୍ମଧ୍ୟରେ ସ୍ୱର୍ଗତ ଯୋଗୀନ୍ଦ୍ର ପଟ୍ଟନାୟକ (୧୯୨୮-୧୯୮୯) ଅନ୍ୟତମ । ପ୍ରଚାର ଓ ପ୍ରସାର ଅଭାବରୁ ଲୋକଲୋଚନର ଆଢୁଆଳରେ ରହିଯାଇଥିବା ଏହି ଗାଳ୍ପିକ ତାଙ୍କର ସମସାମୟିକ ଗାଳ୍ପିକ ସଚ୍ଚି ରାଉତରାୟ, କାହ୍ନୁ ମହାନ୍ତି, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି ପ୍ରମୁଖଙ୍କ ପରି ନିଜସ୍ୱ ଏକ ଧାରା ସୃଷ୍ଟି କରିବାରେ ସଫଳ ହୋଇପାରିଛନ୍ତି । ତାଙ୍କର କାହାଣୀଗୁଡ଼ିକ ଏକ ଉଦାର ମାନବଚେତନା ଉପରେ ପର୍ଯ୍ୟବସିତ ।

ଯୋଗୀନ୍ଦ୍ରବାବୁଙ୍କୁ ଗତ ଶତାବ୍ଦୀର ପଞ୍ଚମ ଦଶକର ଅନ୍ୟତମ ଶକ୍ତିଶାଳୀ ଗାଳ୍ପିକ ଭାବେ ଅଭିହିତ କରନ୍ତି ପ୍ରଖ୍ୟାତ ଗାଳ୍ପିକ ତଥା ତାଙ୍କର ଅନୁଜ ସ୍ୱର୍ଗତ ରବି ପଟ୍ଟନାୟକ । ତାଙ୍କୁ ମାତ୍ର କୋଡ଼ିଏ ବର୍ଷ ବୟସ ହୋଇଥିବାବେଳେ ତାଙ୍କର ଗଳ୍ପ ଦେବ ପଟ୍ଟନାୟକଙ୍କ 'କୁଙ୍କୁମ' ପତ୍ରିକାରେ ପ୍ରକାଶିତ ହୋଇଥିବାର ଦୃଷ୍ଟିଗୋଚର ହୁଏ । ଏହି ସଂକଳନରେ ସ୍ଥାନିତ ଗଳ୍ପଗୁଡ଼ିକ ତାଙ୍କର ଆଦ୍ୟ ଜୀବନର ଲେଖା ଏବଂ ୧୯୪୮ରୁ ୧୯୬୧ ଭିତରେ 'କୁଙ୍କୁମ', 'ଅଗ୍ରଣୀ', 'ମୌସୁମୀ', 'ଆସନ୍ତାକାଲି' ଓ 'ଡଗର' ପରି ପ୍ରତିଷ୍ଠିତ ପତ୍ରିକାମାନଙ୍କରେ ପ୍ରକାଶିତ ।

ମନୁଷ୍ୟ ଜୀବନର ନିଛକ ବାସ୍ତବତା ଓ ଘଟଣାବଳୀ ହିଁ ତାଙ୍କ କାହାଣୀର ବିଷୟବସ୍ତୁ । ଏଇଥିପାଇଁ ତାଙ୍କ ଚତୁଃପାର୍ଶ୍ୱରେ ଆତଯାତ ହେଉଥିବା ଚରିତ୍ରମାନେ ତାଙ୍କ କାହାଣୀ ଭିତରକୁ ପଶିଆସିଛନ୍ତି ଏବଂ ତାଙ୍କ ଲେଖନୀମୁନରେ ଜୀବନ୍ତ ହୋଇ ଉଠିଛନ୍ତି, ଅମର ହୋଇଯାଇଛନ୍ତି । ସ୍ୱାଧୀନତାପ୍ରାପ୍ତିର ପରବର୍ତ୍ତୀ ଦଶନ୍ଧିରେ ଲିଖିତ ଏହି କାହାଣୀଗୁଡ଼ିକରେ ଅଧିକନ୍ତୁ ବ୍ରିଟିଶ୍ ଶାସନର ଅବସାନ ପରେ ସାଧାରଣ ମଣିଷର ସ୍ୱାଧୀନତା ପ୍ରତି ଆସ୍ଥା ଓ ବିଶ୍ୱାସ, ଅନ୍ତରର ଭୟ ସତ୍ତ୍ୱେ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ସାହସ ସଞ୍ଚାର, ସାମ୍ପ୍ରଦାୟିକ ଦଙ୍ଗା ଆଦିର ଚିତ୍ର ଅତି ନିଖୁଣ ଭାବେ ପ୍ରଦର୍ଶିତ ହୋଇଛି ।

ହିନ୍ଦୁ ମୁସଲମାନ ଦଙ୍ଗାର କରୁଣ କାହାଣୀଟିଏ 'ରକ୍ତର ଆହୁତି' । "ଗଗନ ପୂରି ଶବ୍ଦ ଉଠୁଛି" 'ଆଲ୍ଲା ହୋ ଆକବର୍' 'ଜୟହିନ୍ଦ୍'– ତା'ପରେ ରକ୍ତର ସ୍ରୋତ । × × × ଆସନ୍ନପ୍ରସବା ରାଣୀର ମାତା ରକ୍ତର ସ୍ନାନ କରି ଶୋଇପଡ଼ିଛନ୍ତି ଚିରଦିନ ଲାଗି । × × × ଦୁଆର ନିକଟରେ ପଡ଼ିଛି ରାଣୀ । ରାଣୀର ବୁକୁରେ ଏକ ତୀବ୍ର ଛୁରୀ । ନିକଟରେ ତା'ର ପିତା ଅତୁଲ୍‌ବାବୁ ।" ଏହା ସହିତ ଗାଳ୍ପିକଙ୍କ ଆର୍ତ୍ତନାଦ, "ହେ ଶିବ, ରକ୍ଷାକର । ହେ ବ୍ରହ୍ମା, ହେ ସ୍ରଷ୍ଟା, ଆସ, ପ୍ରଳୟ କର । ହେ ମହାଦେବ, ତୁମର ସେ ଭୈରବୀ ଡମ୍ବରୁ ବଜାଅ । ଏ ସମାଜକୁ ନିର୍ବାଣ କରିଦିଅ ।"

ସାମାଜିକ ସମସ୍ୟା ସହିତ ଅସାମାନ୍ୟ ବ୍ୟକ୍ତିଗତ ଅନୁଭୂତି ପ୍ରକାଶରେ ସେ ନିର୍ଭୀକ । ମନ୍ତ୍ରୀଙ୍କ ସାମାନ୍ୟ ପିଆଦାକୁ ମଧ୍ୟ ଭୟ ତାଙ୍କର । ସେ ଦେଇଥିବା ମୁଖପତ୍ରର ମୂଲ୍ୟ ଦେବାକୁ ପାଖରେ ପଇସା ନାହିଁ । ଚରିଅଣା ପଇସା ନିହାତି ଦରକାର । "ଦେଖିଲି ସେଇ ଚରିଅଣା ପଇସା ମୋ ବାକ୍ସର ସୌନ୍ଦର୍ଯ୍ୟକୁ ଅଭିବୃଦ୍ଧି କରୁଛି । ନୟନରୁ ଝରିଲା ଲୁହ । ଚରିଅଣା ପଇସା ଦେବଦୂତ ପାଇଁ ଉଗ୍ରସେନ ହାତରେ ଦେଲି । ଘରଣୀ ଦୁଆର କୋଣରୁ କହି ଉଠିଲେ ଠିକ୍ ହୋଇଛି । ଆଜି ବଜାର ପାଇଁ ପଇସା ନାହିଁ କି ଦୁଧ ଟୋପାଏ କିଣିବା ପାଇଁ ପଇସା ନାହିଁ । ମିନିଟାକୁ ଦୁଧ ଟୋପେ ଦେଇ ପାରୁନି, ଜ୍ୱର ତିନିଦିନ ହେଲାଣି ।"

ଦଳିତମାନଙ୍କ ପ୍ରତି ତାଙ୍କର ଦରଦ ଅସୀମ । ସେ ସେଇ ଖଟିଖିଆ, କୁଲି, ମଜଦୁର, ମୁସଲମାନ ବସ୍ତିର ଗରିବ ଶ୍ରମିକ, ଖାଦାନ୍‌ର ଶ୍ରମିକମାନଙ୍କ ପ୍ରତି ଦରଦ ପ୍ରକାଶ କରିଛନ୍ତି, ଯେଉଁମାନଙ୍କ ଆଗରେ ସମାଜର ସବୁ ରୀତିନୀତି ମୂଲ୍ୟହୀନ, ଯେଉଁମାନେ ଆଦର୍ଶବାଦ ଜାଣନ୍ତି ନାହିଁ ଅଥଚ ଜୀବନକୁ ଅତି ପାଖରୁ ଦେଖନ୍ତି । ଗଳ୍ପ 'ସମବର୍ତ୍ତନ' ଏହାର ଉଦାହରଣ । × × × ନେତାମାନଙ୍କର ଭାଷଣରେ ଦେଶର ଅଗ୍ରଗତି ବୟାନ ହେଉଛି କିନ୍ତୁ ଦିନମଜୁରିଆ, ଶ୍ରମିକମାନଙ୍କର ଅଗ୍ରଗତି ନାହିଁ । ସେମାନେ ଯୋଉଠି ଥିଲେ ସେଇଠି ଅଛନ୍ତି । 'ହୀରାକୁଦ ବନ୍ଧ ତିଆରି ଚାଲିଛି । ହଜାର ହଜାର ସାଧୁ ମଳିକ ସେଠି କୁଲି– ଭାରବାହୀ ପଶୁ । ସେମାନଙ୍କର ପ୍ରଭୁ ହେଉଛନ୍ତି କେତେଗୁଡ଼ିଏ ବିଦେଶୀ ପଞ୍ଜାବୀ । ସାଧୁ ମଳିକ ମାଡ଼ ଖାଏ, ତା'ରି ଦେଶରେ । ପଞ୍ଜାବୀର ବୁଟ୍ କଣ୍ଟା ତା'ର ନାକ କାନ ଫୁଟାଏ, ରକ୍ତ ବୁହାଏ ।' ପୁଣି 'ସାଧୁ ମଳିକ ସ୍ତ୍ରୀର ନାକଗୁଣା ବିକି ଜମାଦାରକୁ ଭେଟି ଦେଇଛି, ଭକ୍ତିରେ ନୁହେଁ,

ଭୟରେ ।’ ‘ଦୁନିଆ ପାଲଟି ଯାଇଛି । ରଙ୍ଗ ଫେରିଯାଇଛି । କିନ୍ତୁ ଅଚଳ ଅଟଳ ସ୍ଥାଣୁ ହୋଇ ପଡ଼ିରହିଛି ସାଧୁ ମଳିକ, ସାଧୁ ମଳିକର ଜାତି ।’

ସେମିତି ଚରିତ୍ରଟିଏ ଲତିଫ୍ । ଲତିଫ୍ ଖୁନ୍ କରେ, ଚୋରି କରେ । ରୋଜାର ଶେଷଦିନ । ସେ ଇଦ୍ ମୁବାରକ୍ କରିବ, ରୋଷନି ବିବିକୁ ତୋଫା ଦେବ ଏବଂ ହୀରା ହାରଟେ ଆଣି ବିବିକୁ ତୋଫା ଦେଇଛି ମଧ୍ୟ । କିନ୍ତୁ ରୋଷନି ବିବି ସେ ହାରକୁ ଛିଡ଼େଇ ଫୋପାଡ଼ି ଦେଇଛି କାରଣ ସେଇଟା ସେ ଖୁନ୍ କରି ଆଣିଛି । ବିଷାଦ ଓ ଗ୍ଲାନିରେ ଲତିଫ୍ ଘରୁ ବାହାରି ଯାଇଛି । ବର୍ଷଣମୁଖର ରାତି । ସେଇ ରାତିରେ ସେ ପରିତ୍ୟକ୍ତ ନବଜାତ ଶିଶୁଟିଏ ପାଇଛି ନର୍ଦ୍ଦମାରୁ । ତାକୁ ନେଇ ସେ ସନ୍ତାନହୀନା ରୋଷନି ବିବିର ହାତକୁ ଟେକି ଦେଇଛି ଏବଂ ଦୁହେଁ ନବଜାତ ଶିଶୁଟିକୁ ସମ୍ନାରେ ରଖି ଆଣ୍ଠୁମାଡ଼ି ବସି ହାତପାତି କୋରାନ୍‌ର ପଦ ଆବୃତ୍ତି କରୁଛନ୍ତି (ଗଳ୍ପ ‘ପଡ଼ନ୍ତ ରୌଦ୍ର ଓ ବନାନୀର ମାୟା’) ।

ଗଳ୍ପ ‘ସୁଖସ୍ୱପ୍ନ’ରେ ଲତିଫ୍ ମିଆଁର ସ୍ତ୍ରୀ ସନ୍ତାନପ୍ରସବ କରି ନପାରି ମୃତ୍ୟୁବରଣ କରିଛି । ଅଭାବୀ ଲତିଫ୍ କଫିନ୍‌ର କପଡ଼ା କିଣିବା ପାଇଁ ବଜାରକୁ ଆସିଛି । କିନ୍ତୁ ହାତରେ ପଇସା ପାଇ ପିଇବାର ଲୋଭକୁ ସମ୍ବରଣ କରିପାରିନି, ପ୍ରଚୁର ପିଇଛି ଏବଂ ସମ୍ଭାଳି ନପାରି ରାସ୍ତାକଡ଼ ନର୍ଦ୍ଦମାରେ ପଡ଼ି ଶୋଇଯାଇଛି, ସୁଖସ୍ୱପ୍ନରେ । ‘ଖାଦାନ୍‌ର ଛଣ୍ଡି’ ଗଳ୍ପରେ ଖାଦାନ୍‌ର ଛଣ୍ଡିମାନେ ଦେହ ବିଛେଇ ଦିଅନ୍ତି କାମନାର ଚରିତାର୍ଥ ପାଇଁ କିନ୍ତୁ କୌଣସି ବାଧା ଆସିଲେ ସେମାନେ କିଛି ବୁଝନ୍ତି ନାହିଁ, କ୍ଷୁଧିତା ସିଂହୀ ପରି କୁଦି ପଡ଼ନ୍ତି । ଏସବୁ ଗଳ୍ପଗୁଡ଼ିକ ଅତ୍ୟନ୍ତ ବାସ୍ତବଧର୍ମୀ ଏବଂ ଆଖ୍ୟାନ ଶ୍ରେଣୀଭୁକ୍ତ ।

ନାରୀ ଚିରକାଳ ରହସ୍ୟମୟୀ ଓ ଶତରୂପା । ଯୋଗୀନ୍ଦ୍ରବାବୁଙ୍କ ଗଳ୍ପର ନାରୀ ଚରିତ୍ରମାନେ ନାରୀର ଏହି ବହୁବିଧ ରୂପର ବିଭାରେ ସମୁଜ୍ଜ୍ୱଳ । ତାଙ୍କ ଗଳ୍ପର ନାରୀଚରିତ୍ରମାନେ ‘ଶରତବାବୁଙ୍କ ସ୍ତ୍ରୀ’ ପରି ରହସ୍ୟମୟୀ ହୋଇପାରନ୍ତି, ନିଜକୁ ତିଳ ତିଳ ଜାଳି ଅତୀତକୁ ଭୁଲି ସମାଜସଂସ୍କାରକ ବନି ପାରନ୍ତି (ପ୍ରଭାବତୀ ‘କଳଙ୍କ’), ନିଜ କାମନା ଓ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ, କାହାର କାମନାରେ ଆହୁତି ଦେଇ ନିହାତି ଅସହାୟଭାବେ ଭବିଷ୍ୟତର ଅନ୍ଧକାର ଭିତରକୁ ପାଦ ବଢ଼େଇପାରନ୍ତି (ଶିଖା ‘ଦାଗ’), କାମନା ଜର୍ଜରିତ ହୋଇ ନିର୍ଲଜ୍ଜଭାବେ କାହା ଉପରେ ଓଜାଡ଼ି ହୋଇପଡ଼ନ୍ତି

(କଳ୍ପନା 'ଏକ ପ୍ରେମର ଇତିକଥା'), ପୁଣି କେତେବେଳେ କରୁଣାମୟୀ ମା' ରୂପରେ ଭିକାରୁଣୀର ସନ୍ତାନକୁ ବକ୍ଷପାନ ଦେବାକୁ କୋଳେଇ ନିଅନ୍ତି (ଅବନ୍ତୀ 'ଜ୍ୱଳନ'), ପୁଣି ସ୍ୱାମୀର ଅନୁପସ୍ଥିତି ସୁଯୋଗରେ ସେମାନେ ପରକୀୟା ପ୍ରୀତିରେ ନିମଜ୍ଜି ପାରନ୍ତି କିନ୍ତୁ ସ୍ୱାମୀ ଅନ୍ୟ କାହାର ପ୍ରେମ ପାଖରେ ବନ୍ଧା ହେଲେ ସେମାନେ ହୁଅନ୍ତି ଏକାନ୍ତଭାବେ ତାଙ୍କର (ଅମିନା 'କାଚକାଞ୍ଚନ')। ମାତୃତ୍ୱରେ ଆଶାୟୀ ନାରୀ ପ୍ରତାରିତା ହେଲେ ଉଗ୍ରରୂପା ହୁଏ ଏବଂ ପ୍ରତିହିଂସାରେ ଗୁଳି ମଧ୍ୟ ଚଳେଇପାରେ ଫମ୍ପା ଆଦର୍ଶବାଦୀ ପୁରୁଷ ଉପରକୁ (ବାର୍ଥା 'ଝଡ଼ ଓ ଦୁଇଟି ବିତ୍ରସ୍ତ ପାଖୁଡ଼ା') ଏବଂ ନାରୀର ମୋହିନୀ ଶକ୍ତି ସ୍ଥିତପ୍ରଜ୍ଞଙ୍କୁ ମଧ୍ୟ କାମାନ୍ଧ କରିପାରେ (ରୀନା 'ଅନ୍ଧ')। ଗଳ୍ପ 'ଶୂନ୍ୟ କବରୀ'ରେ ସୁକାନ୍ତିର ଆଲେଖ୍ୟ ଅଙ୍କନ କରି ତା'ର ଭାବଗତ ଛନ୍ଦରେ ଛନ୍ଦାୟିତ ହୁଅନ୍ତି ଗାଳ୍ପିକ। 'କାଳି ହେଲେ ବି ସେ ଅନନ୍ୟା ସୁନ୍ଦରୀ' ତାଙ୍କର ଏଇ ଆଶ୍ୱାସବାଣୀରେ ସୁକାନ୍ତି ପୂର୍ଣ୍ଣତା ପାଏ, ତୃପ୍ତ ହୁଏ ଏବଂ ତୃପ୍ତିର ହସ ହସି ଚିର ବିଦାୟ ନିଏ।

ମଣିଷର ପ୍ରବୃତ୍ତି ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ମଧ୍ୟ ସ୍ୱଚ୍ଛ। ମଣିଷ ଚିରକାଳ ନିଜର ଆଦିମ ପ୍ରବୃତ୍ତିର ଦାସ ହୋଇ ରହିଛି ଏବଂ ସୁଯୋଗ ପାଇଲେ ପୁରୁଷ ନିଜର ସବୁ ଆଦର୍ଶ ଓ ଲକ୍ଷ୍ୟକୁ ଜଳାଞ୍ଜଳି ଦେଇ କୌଣସି ନାରୀର ଉନ୍ନତ ବକ୍ଷ ଉପରେ ନିଜର ବକ୍ଷ ଜଡ଼ାଇ ଧରିପାରେ। ଏମିତି ଚରିତ୍ରଟିଏ ମନମୋହନ (ଗଳ୍ପ 'ପାପ ଓ ପ୍ରାୟଶ୍ଚିତ୍ତ')।

ସଂକଳନରେ ସ୍ଥାନିତ ଗଳ୍ପ ମଧ୍ୟରେ କିଛି ଭିନ୍ନ ସ୍ୱାଦର ଗଳ୍ପ ମଧ୍ୟ ରହିଛି। ଏକତରଫା ପ୍ରେମ କରୁଥିବା 'ପ୍ରେମିକ ଦାସ୍'ଙ୍କୁ ବିଷମ ସ୍ଥିତିରେ ପକେଇ ବନ୍ଧୁମାନେ ମଜା ନିଅନ୍ତି। 'ଆମ ଯଦୁମଣିର ପ୍ରେମ'ରେ ପ୍ରେମ ଯଦୁମଣି ପାଇଁ ନିଶା। ସେ ବିଭାହେବା ପାଇଁ ବର ସାଜେ କିନ୍ତୁ ବିବାହ ଉପରାନ୍ତେ ପ୍ରେମ ପାଇଁ ସମସ୍ତ ସୁଯୋଗର ଅବସାନ ହେବ, ଏହି ଭାବନାରେ ଆତଙ୍କିତ ହୋଇ ଅନ୍ତିମ ମୁହୂର୍ତ୍ତରେ ଖସିଯାଏ ନିଜ ସାଙ୍ଗକୁ ବର ସଜେଇ। 'ଶୁଭବିବାହ' ଗଳ୍ପରେ ବର ମନର କୌତୂହଳ ସମ୍ଭାଳି ନପାରି କନ୍ୟାକୁ ଦେଖିବା ପାଇଁ ଗବାକ୍ଷ ନିକଟକୁ ଯାଏ କିନ୍ତୁ ଘଟଣାଚକ୍ରରେ ବେଶ୍ ଉତ୍ତମ ମଧ୍ୟମ ପାଇ ବେହାଲ ହୁଏ। ଏମିତି ଅନେକ କୌତୁକିଆ କାହାଣୀ ମଧ୍ୟ ତାଙ୍କ ଲେଖନୀରୁ ଜନ୍ମ ନେଇଛି।

ଜୀବନର ମଧୁରତା ଭିତରେ ସଦା ଲୁଚି ରହିଥାଏ ଅନେକ ପ୍ରଶ୍ନବାଚୀ, ବୈଚିତ୍ର୍ୟତାର କୁହୁଡ଼ି । କେଉଁଠି ପ୍ରଣୟ ରୋଗର ବନ୍ଧନ ମାନେ ନାହିଁ (ଆଦ୍ୟ ଆଷାଢ଼ର ବିରହୀ ଯକ୍ଷ) ତ କେଉଁଠି ମଣିଷ ଆଜି ଯାହାକୁ ଭଲପାଏ କାଲି ତାକୁ ଘୃଣାରେ ଠେଲିଦିଏ (ଗୁନ୍‌ମନି) । ପୁଣି, ଶିଳ୍ପୀ ମନପ୍ରାଣ ଦେଇ ଯେଉଁ ମୂର୍ତ୍ତି ଗଢ଼େ ସେ ହୁଏ ତାର ପ୍ରାଣପ୍ରିୟା (ଶିଳ୍ପୀ ଓ ପ୍ରତିମା) । ସ୍ୱାମୀ ସ୍ତ୍ରୀର ପରସ୍ପର ଆପେକ୍ଷିକ ସମ୍ବନ୍ଧ ମଧ୍ୟରେ ଶୂନ୍ୟତାକୁ ପରିପ୍ରକାଶ କରିହୁଏନା (ଅୟି ଇ) । ନୂଆ ଆଗନ୍ତୁକଟିଏ ପାଇଁ ସ୍ୱାମୀ-ସ୍ତ୍ରୀ କେତେ ସ୍ୱପ୍ନ ନ ଦେଖନ୍ତି ! କିନ୍ତୁ ଆଗନ୍ତୁକ ଆସେ ଏବଂ ଚାଲିଯାଏ, ଧାରେ ଲୁହ ଓ ସ୍ମୃତିକୁ ନେଇ (ଆଖିର କଳା) । ଏମିତି ଅନେକ ପରିପକ୍ୱ ଚିନ୍ତା ଓ ଚେତନାରେ ସମୃଦ୍ଧ ଯୋଗୀନ୍ଦ୍ରବାବୁଙ୍କ କାହାଣୀ । ତାଙ୍କ କାହାଣୀରେ ବକ୍ରୋକ୍ତି ନାହିଁ, କଟାକ୍ଷ ନାହିଁ, ବ୍ୟଙ୍ଗ ନାହିଁ କି ବିଦ୍ରୂପ ନାହିଁ । ଅପୂର୍ଣ୍ଣତାର ଅବସୋସ ମଧ୍ୟ ନାହିଁ । ମଣିଷ ଜୀବନର ସୁଖଦୁଃଖକୁ ନେଇ ରଚିତ କାହାଣୀଗୁଡ଼ିକ ମାନବତାର ମନ୍ତ୍ରରେ ଜୀବନ୍ତ ହୋଇ ଉଠିଛି ।

ଯୋଗୀନ୍ଦ୍ରବାବୁ ଓଡ଼ିଆ ସାହିତ୍ୟ ଜଗତର ଏକ ବହୁମୁଖୀ ପ୍ରତିଭା । ନିଜର ଲେଖନୀ ପ୍ରତି ଥିଲା ତାଙ୍କର ଅଖଣ୍ଡ ବିଶ୍ୱାସ । ଏହି କାରଣରୁ ସେ ଜିଲ୍ଲା ଲୋକ ସମ୍ପର୍କ ଅଧିକାରୀ ପରି ସରକାରୀ ଚାକିରିକୁ ପ୍ରତ୍ୟାଖ୍ୟାନ କରି ନିରୋଳା ସାହିତ୍ୟ ସାଧନାରେ ମଗ୍ନ ରହିଥିଲେ ମୃତ୍ୟୁ ପର୍ଯ୍ୟନ୍ତ । ସେ ବି.ଏ. ପାସ୍ କରିବା ପୂର୍ବରୁ ତାଙ୍କର ଅନେକ ନାଟକ ଆକାଶବାଣୀରେ ପ୍ରସାରିତ ହୋଇସାରିଥିଲା । ସେ ଜଣେ ଭଲ ଅଭିନେତା ମଧ୍ୟ ଥିଲେ । ୧୯୫୪ ବେଳକୁ ସେ 'ଡଗର'ର ସମ୍ପାଦନାରେ ସହାୟତା କରିଥିଲେ ନିତ୍ୟାନନ୍ଦ ମହାପାତ୍ରଙ୍କୁ । ଗଳ୍ପ 'ବିନୋଦ ଦାସ' ତାଙ୍କର ଆତ୍ମଲିପି ପରି ମନେହୁଏ ।

ଯୋଗୀନ୍ଦ୍ରବାବୁଙ୍କ ଗଳ୍ପକୁ ସଂକଳନର ରୂପ ଦେବାପାଇଁ ଇଏ ପ୍ରଥମ ପ୍ରୟାସ । ସଂରକ୍ଷଣ ଅଭାବରୁ ତାଙ୍କର ପରବର୍ତ୍ତୀ କାଳର ଗଳ୍ପ ସଂଗୃହୀତ ହୋଇପାରିନାହିଁ । ଏହି ସଂକଳନ ପ୍ରସ୍ତୁତି ନେପଥ୍ୟେ ଯେଉଁ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଭୂମିକା ରହିଛି ସେମାନେ ହେଲେ ଓଡ଼ିଶାର ପ୍ରଥିତଯଶା କବି ସ୍ୱର୍ଗତ ବ୍ରଜନାଥ ରଥ ଏବଂ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ପ୍ରାଣୀବିଜ୍ଞାନୀ ତଥା ଗାଳ୍ପିକଙ୍କ ଅନୁଜ ପ୍ରଫେସର ଭବେନ୍ଦ୍ର କୁମାର ପଟ୍ଟନାୟକ ।

ବ୍ରଜବାବୁଙ୍କ ପ୍ରେରଣା, ଅକୁଣ୍ଠିତ ସାହାଯ୍ୟ ଓ ଭବେନ୍ଦ୍ରବାବୁଙ୍କ ଉତ୍ସାହ ଉଦ୍ୟମ, କାହାଣୀଗୁଡ଼ିକ ସଂଗ୍ରହ ଦିଗରେ ମୋ ସାନଭାଇ ଶାନ୍ତନୁର ଶ୍ରମ ତଥା ପୁସ୍ତକର ପ୍ରକାଶନ ଦିଗରେ ଅବସରପ୍ରାପ୍ତ ରିଡ଼ର୍ ଡଃ ସୌମେନ୍ଦ୍ରନାଥ ଘୋଷଙ୍କର ଦାୟିତ୍ୱବୋଧ ପାଇଁ ସେମାନେ ଧନ୍ୟବାଦାର୍ହ ।

**ସନ୍ତୋଷ ବେଜ୍**

ଅବସରପ୍ରାପ୍ତ ଇଂରାଜୀ ରିଡ଼ର୍

ରସାଲପୁର କଲେଜ, ବାଲେଶ୍ୱର



# ସୂଚୀ

# ପଡ଼ନ୍ତ ରୌଦ୍ର ଓ ବନାନୀର ମାୟା

ଲତିଫ୍ ନିଶଟା ଉପରେ ଦି'ଥର ହାତମାରି ଘରିମିନାର ସିଗାରେଟ୍ ଓଠରେ ଗୁଞ୍ଜି ସମ୍ଭ୍ରମ ସ୍ୱରରେ ଡାକିଲା– ରୋଷ୍ନି, ଆୟ ରୋଷ୍ନି, କଥା କରତିନ୍ ।

ରୋଷ୍ନି ବାହାରି ଆସିଲା । ଅଙ୍ଗରେ ଝକମକ ଲୁଗା– ଓଢ଼ଣୀ ମଥାରେ ଗୋଟାଏ ଝକମକି ରୁମାଲ । ଯୌବନ ଆସ୍ତେ ଆସ୍ତେ ନଇଁ ପଡ଼ିଛି ।

–ରୋଜା

ଲତିଫ୍ ଗୋବରଲଣ୍ଡା ଦିଆ ପିଣ୍ଡା ଉପରେ ବସି ପଡ଼ିଲା– ଠିକ୍ ହୁଆ । ରୋଜା । ଆଲ୍ଲା । ଆୟେ ରୋଷ୍ନି ତୁ ତ କିତ୍ନା ଉପାସ ଓଷା କରିସ୍ । ମଗର୍...

ରୋଷ୍ନି ଏଇଠି ବିରକ୍ତ ହୁଏ । ଲତିଫ୍ ତାକୁ ନିକା କରି ଆଣିଛି । ସେ କେତେ ଆନନ୍ଦ ଦିନର କଥା । ସ୍ୱାମୀ ସ୍ତ୍ରୀ ପରି ସେମାନେ ଚଳିଆସିଛନ୍ତି ଦୁନିଆର ଦରବାରରେ ବର୍ଷ ବର୍ଷ ଧରି । କିନ୍ତୁ ରୋଷ୍ନି କୋଳରେ ଗୋଟିଏ ପିଲା ପାଇଁ କେତେ ଦିଅଁ ଦେବତା ପୀରବାବାଙ୍କୁ ଭୋଗ ନ ଯାଚିଛି ! ସେ ଅନନ୍ତ ବ୍ରତ, ସୁଦଶା ବ୍ରତଠାରୁ ଶିବଙ୍କ ଯାତରେ ଜାଗର ଜାଳିଛି, ଉପାସ ଭୋକରେ । ଦିନେ ଦିନେ ଏହି କଥା ଲତିଫ୍‌କୁ କହେ ରୋଷ୍ନି– ତୁ ପକେଟ୍‌ମାର ଛାଡ଼ି ଦେ । କାମ କର୍ । ଲତିଫ୍ କହେ, ସେ ବୁଟ୍ ପଲିସ୍ କରେ– ରୋଜଗାରରେ ଦୁଇଜଣଙ୍କର ସିନେମା– ହପ୍ତାକୁ ଦୁଇଥର ମାଂସ କି ଦୁଇଟା ଅଣ୍ଡା ମିଳେନା । ସେଥିପାଇଁ ସେ ବାଧ ହେଲା । ଲତିଫ୍ କହେ– ଆଲ୍ଲାର ମରଜି । ସେ କୋରାନର ଦୋହା ଆବୃତ୍ତି କରେ । ଆଲ୍ଲା ମନୁଷ୍ୟ ଭିତରେ ପୁରୁଷ ଓ ସ୍ତ୍ରୀର ଭାଗ କରିଛି । କିନ୍ତୁ ଏସବୁ ଜାଣିବାର ପାଇଁ । ତଫାତ୍ ନାହିଁ– କର୍ମ ଅନୁସାରେ ମଣିଷ ଜାତି ।

ରୋଷ୍ନି କହେ– ସେ ଲୋଡ଼େ ଗୋଟିଏ ଛୋଟ ଶିଶୁ ଯେ କି ତା'ର ଛୋଟ ଛୋଟ ହାତରେ ରୋଷ୍ନିର ଗଳାକୁ ଜଡ଼ାଇ ଧରିବ । ଆଉ ରୋଷ୍ନି ସେଇ କୋମଳ ଶିଶୁଟିର ଦେହ ଆଚ୍ଛାଦିତ କରିଦେବ ଚୁମା ପରେ ଚୁମା ଦେଇ ।

ଲତିଫ୍ କହେ– ଆରେ ପାଗଲୀ, ତୁ ଯବ୍ ବୋଲିସ୍ ତୋ କେତନି ଲେଗୀ– ?

ଲତିଫ୍ ବହୁ ସମୟରେ ମହୁଲି ମଦଖାଇ ଚୁର୍ ହୋଇଥାଏ । ସେ ତ୍ରସ୍ତ ସ୍ୱରରେ କହେ– ପିଲା ପାଇଁ କାନ୍ଦୁଛୁ– ସହରର ନର୍ଦ୍ଦମାରେ ଖୁବ୍ ଭଲ ପିଲାକୁ ତା'ର ମା'ମାନେ ଛାଡ଼ିଦେଇଯା'ନ୍ତି । କାଇଁ ସେମାନଙ୍କ ଆଖିରେ ତୋଭଳି ତ ଲୁହ କେବେ ଦେଖିନାହିଁ, ବରଂ ସେମାନଙ୍କୁ ପର ମୁହୂର୍ତ୍ତରେ ଦେଖିଛି ସେମାନେ ସେଇ ଆଭିଜାତ୍ୟରେ ବେଶ୍ ଭରପୂର । ସମାଜରେ ଟିକିଏ ବୋଲି ଦାମ୍ କମିନାହିଁ ।

ଲତିଫ୍ ସ୍ୱୀକାର କରେ ରୋଷ୍ନି ପେଟଫାଡ଼ି ପିଲାଜନ୍ମ କରୁ । ସେଇଟା ଅସଲ ପିଲା ହେବ । କିନ୍ତୁ ଆଲ୍ଲା ତ ମରଜି କରି ନାହିଁ । ବେଳେବେଳେ ତାର ଦାନ୍ତୁଆ ଛୁରୀଟା ଉପରେ ଶାଣ ଦେଉ ଦେଉ ଚିନ୍ତା କରେ ଏଇ ଛୁରୀଟା ଯାତ୍ରା ଗହଳିରେ କେତେ ପିଲାର ବେକରୁ ସୁନାହାର କାଟି ଚମକାଇ ଦେଇଛି । ଏଇଟା ଅବ୍ୟର୍ଥ । ଲାଗିଲା ତ ନିଶ୍ଚୟ କାଟିଦେବ । ତା'ଛଡ଼ା ରକ୍ତ ଖାଇ ଖାଇ କିପରି ତେଜ ହୋଇ ଉଠିଛି । ସେଇ ସେ ଦିନର କଥା, ମାଇକିନାଟାକୁ ଖୁନ୍ କରିବାକୁ ହେଲା । ବାପ୍‌ରେ ତାକୁ କଣ ମାଲୁମ ଥିଲା, ପାଞ୍ଚହଜାର ଟଙ୍କାର ଗହଣା ବେକରେ ହାତରେ ଥିଲା ବୋଲି । ଗୋଟାଏ ସାମାନ୍ୟ ସରକାରୀ ଚାକିରି କରେ । ଏତେ ଗହଣା ! ସବୁ ରିସପତ୍, ଚୋରି । ଠିକ୍ ଖବରଟା ଦେଇଥିଲା ।

ଲତିଫ୍ ବେଳେବେଳେ ଖଦଡ଼ ପିନ୍ଧି ବାହାରେ । ଗଗଲ୍‌ସଟା ଖୁବ୍ ଖାପ ଖାଏ । ରୋଷ୍ନି କହେ– ନେତା ବନଗଇସ୍ । ଲତିଫ୍ କହେ– ଲେନେ ବାଲା ଲେତା– ନେତା, ଲିଡ଼ର୍ । ଏ ସମୟଟାରେ ସେ କାହାରି ସଭା ଭାଙ୍ଗିବା, କାହାକୁ ପିଟିବା, ମାଡ଼ ମାରିବାରେ ସାହାଯ୍ୟ କରି ଅର୍ଥ ମିଳେ, ମୋକଦ୍ଦମାରେ ସାହାଯ୍ୟ ମିଳେ । ରାତି ଅଧରେ ମନ୍ତ୍ରୀ– ନେତାମାନଙ୍କ ଘରେ ଭେଟ୍ ହୁଏ । ଫେରିଲାବେଳକୁ ଆଖି ରଙ୍ଗା ପଡ଼ିଥାଏ– ବାଟରେ ପୁରୁଣା ଗ୍ରାହକକୁ ଦେଖି ଗୋଲାପ କହେ– ଆଃ ଆ–

ଲତିଫ୍ ଏହିଠାରେ ଦୃଢ଼ ହୁଏ– ଏକାଝାଂକରେ ଗୋଲାପକୁ ଠେଲିଦେଇ କହେ–ହୁସିଆର ବେ, ଭେକୁ ଚଲାଯାଏଗା । ତା'ପରେ ପାଖକୁ ଡାକେ– ଖାଇବାକୁ ପୟସା ଦରକାର ? ହାତରେ କିଛି ଟଙ୍କା ଅନ୍ଧାରରେ ଗୁଞ୍ଜି ଦେଇଯାଏ ।

କବାଟ ଦର ଆଉଜା କରି ବସିଥାଏ ରୋଷ୍ନି । ଛୋଟ ଡିବିରିଟାଏ ଜଳୁଥାଏ ଜଳ ଜଳ ହୋଇ । ଦରଜା କେଁକରି ପଶିଯାଏ, ଆଉ ଲୋଟିପଡ଼େ ରୋଷ୍ନିର ବୁକୁ ଉପରେ ।

ଇଦ୍‌ର ଚାନ୍ଦ ଦିଶିବାକୁ ଆହୁରି ସାତଦିନ ବାକି । ଲତିଫ୍ ଦେଖୁଛି ମନପ୍ରାଣ ଦେଇ ରୋଷ୍‌ନି ଡାକୁଛି । ଆଉ ଅଧିକ କଥା କି ଅଧିକ ଫେରାଦ୍ କିଛିନାହିଁ । ସେ ଆଣ୍ଠୁମାଡ଼ି ପ୍ରାର୍ଥନା କରୁଛି ନୀରବରେ, ନିଶୂନ ଘରେ । କାଷ୍ଠା ଉପବାସ । ଲତିଫ୍ ଦେଖୁଛି, ରୋଷ୍‌ନି ତା କୋଳରେ । କିନ୍ତୁ ଶୋଇବାକୁ ସୁଖ ପାଉନାହିଁ ।

ଆଉ ଗୋଟାଏ ଚାରମିନାର ଲଗାଇ ଠିଆହେଲା ଲତିଫ୍ । ପାଖଘର ବୁଢ଼ୀଟା ଖୁଁ ଖୁଁ କାଶୁଛି– ତା'ପରେ ବାନ୍ତି । ପଚା ନର୍ଦ୍ଦମାରେ ବିଲୀନ ହୋଇଯାଉଛି କି ନାଇଁ କିଏ ଖୋଜ ରଖିବ । ଯକ୍ଷ୍ମା ବୀଜାଣୁ ଯେମିତି ପକ୍ଷ ମେଲାଉଛି ।

ତା' ପାଖକୁ କେଉଁ ଅଫିସର୍ ହେଡ଼ କିରାନିଙ୍କ ଘର । ପୁଅଗୁଡ଼ାକ ପାଠପଢ଼ି ଅପାଠୁଆ । ଚାକିରି କାହିଁ । ବାପଟାର ଏକ୍ସଟେନ୍‌ସନ୍ ପାଇଁ ଏଥର ଅଫିସର ସାଙ୍ଗରେ ବଢ଼ିଲା ଝିଅଟାକୁ...

ଲତିଫ୍ ମିଆଁ ହସିଲା । ସେ ଜୀବନଟାକୁ ଇମିତି ହସି ଶିଖିଛି ।

ଡାଲି, ଚାଉଳ, ପଇସା ଅଭାବ ନାହିଁ । ବରଂ ଯେଉଁମାନେ ନେଇଛନ୍ତି ସେମାନେ ଅନେକେ ଫେରାଇ ନାହାନ୍ତି ।

ଲତିଫ୍ କହିଲା– ରୋଷ୍‌ନି, ରୋଜା କରଲିସ୍ ? "ଆଲ୍ଲା ମିଆଁ ବଡ଼ା..." ରୋଷ୍‌ନି ଜାଣେ ସେ କଣ ବୋଲି କଣ କହିଯିବ । ସେ ତାର ପାଟିରେ ହାତ ଦେଇ କହିଲା–

ପ୍ୟାରେ– ଏୟସା ମତ୍ ବୋଲ୍‌ନା ।

ଆଲ୍ଲା– ଭଗବାନକା ଜରୁର ମଞ୍ଜୁର ହୋଗା– ଜରୁର...

ଲତିଫ୍ ରୋଷ୍‌ନିର ଉଦ୍ଦୀପ୍ତ ଆଖି ଦୁଇଟାକୁ ଅନାଇ କିଛି ସମୟ ପବିତ୍ର ହୋଇଗଲା । ରୋଷ୍‌ନି ରାଣ ପକାଇଛି ଏଇ କେତେଦିନ ଅନ୍ତତଃ ଲତିଫ୍ ଯେପରି ଦୁର୍ନୀତିରୁ କ୍ଷାନ୍ତ ହୁଏ, ସେ ଯେକୌଣସି ଅବସ୍ଥା ହେଉ ନା କାହିଁକି ?

ଏଇ କେଇଟା ଦିନ ଲତିଫ୍‌କୁ ନିଶ୍ଚେଷ୍ଟ ହୋଇ ବସି ରହିବାକୁ ବଡ଼ ଖରାପ ଲାଗୁଛି । ସେ ଚାରମିନାର ଖାଉଛି ଅପର୍ଯ୍ୟାପ୍ତ ପରିମାଣରେ । ଖୁବ୍ ଭଲ ଭଲ ସୁଯୋଗମାନ ପାଖ କଟାଇ ଚାଲିଯାଉଛି । ସୁର ଆଉ ଟିକୁନ୍‌ମାନେ ଏଇ ଭିତରେ ବେଶ୍ ପଇସା କମାଇ ନେଲେଣି । ଲତିଫ୍ ମିଆଁ ଯଦି ଥା'ନ୍ତା ଏ ସୁଯୋଗ ମିଳିବା ଦୂରେ ଥାଉ ସହର ଏପାଖ ମାଡ଼ିବାକୁ ରକ୍ତ ଶୁଖିଯା'ନ୍ତା ।

ଘଣ୍ଟା ଘଣ୍ଟା କରି କିପରି ସାତଦିନ କଟିବ ଏଇକଥା ଚିନ୍ତା କରୁଛି ଲତିଫ୍ । ମନରେ ତାର ଖିଆଲ ହେଲା ରୋଜାର ଶେଷଦିନ ସେ ଇଦ୍ ମୁବାରକ କରିବ ରୋଷ୍ନି ସାଙ୍ଗରେ । ତୋଫା କ'ଣ ଦେବ ?

ସେ ଗଭୀର ଚିନ୍ତା କରିବାକୁ ଲାଗିଲା । ହୀରାର ନେକ୍‌ଲେସ୍– ସେଦିନ ଦୁଇତାଲା ଉପରେ ଅଗରବାଲର ସ୍ତ୍ରୀ ପିନ୍ଧି ଠିଆହେଲା । ତା' ଆଖିରୁ ବାଦ୍ ଯାଇନି । ତେବେ ସେ କୁଆଡ଼େ ଶୋଇଲାବେଳେ ସେଇଟାକୁ ହାତରେ ଧରି ଶୁଏ ।

ଆଗାମୀ କାଲି ଚାନ୍ଦ ଦିଶିବ– ଇଦ୍‌ର ଚାନ୍ଦ । ରୋଷ୍ନିର ରୋଜା ସରିବ । ସେ ମୁହଁ ଫିଟାଇ ମୁହଁକୁ ମୁହଁ ଲଗେଇ କେତେ ପ୍ରେମରସ ହସର କଥା ଉପରେ ତାର ଉନ୍ନତ ବକ୍ଷ ଚାପି ଅଧରରେ ଅଧର ମିଳାଇବ । ଆଉ ଲତିଫ୍ କହିବ– ହାସ୍ ନାବାନୁ– ତାଜ୍– ରୋଷ୍ନି ମୁସ୍‌କୁରାନା ।

ଲତିଫ୍ ପାର୍କର ବେଞ୍ଚ ଉପରେ ପେଟେଇପଡ଼ି ନିର୍ବୋଧ ଭଳି ହେଲା । ତା'ପରେ ଉଠିପଡ଼ିଲା । ଚାକୁଟାକୁ ବାହାର କରିଆଣି ଚୁମା ଖାଇଲା ।

ମସ୍‌ଜିଦ୍‌ରେ ସ୍ୱର ଉଠୁଛି– ଇଦ୍‌ଦ୍ ଜୁହା– ରମ୍‌ଜାନ– ଆଲ୍ଲା ହୋ ଆକବର ।

ସକାଳୁ ଉଠି ଗାଧୋଇପାଧୋଇ ଲତିଫ୍ ମସ୍‌ଜିଦ୍‌କୁ ବାହାରି ପଡ଼ିଲା । ଆଜିର ଏ ଦିନ କେଡ଼େ ଆନନ୍ଦର ଦିନ । ରୋଷ୍ନି ଦେଖୁଛି ରୋଷ୍ନି ଖେଳୁଛି ଗଛପତ୍ର ପାଣି ପବନରେ । ସେ ନିହିତ ସ୍ୱପନରେ ଦେଖୁଛି । ମନେ ମନେ ଲତିଫ୍ ମିଆଁ ଭାବୁଛି ଘରକୁ କେତେବେଳେ ଫେରିବ । ସେଇ ଗୋପନ କୋଠରି ଭିତରେ ସେ ଯେତେବେଳେ ଉଜ୍ଜ୍ୱଳ କରି କାଢ଼ିବ ହୀରକର ହାର, ରୋଷ୍ନି ପାଗଳ ହୋଇଯିବ !

ସମବେତ କଣ୍ଠରେ ଉଠିଛି ଆଲ୍ଲା ପ୍ରେମର ଝଙ୍କାର । ମନ୍ଦ୍ରିତ ହୋଇ ଉଠିଛି ମସ୍‌ଜିଦ୍‌ର ଗମ୍ଭୀର ପ୍ରତିଧ୍ୱନି । କ୍ରମେ କ୍ରମେ ଉଠୁଛି ଉପରକୁ । ଲତିଫ୍ ବାଧହୋଇ ଭକ୍ତି ପ୍ରକାଶ କରୁଛି । ଆଉ ଘରେ ରୋଷ୍ନି କଣ୍ଠରେ ଭଙ୍ଗା ବୀଣାର ଝଙ୍କାରରେ ଅପୂର୍ବ ଶିହରଣ ।

ବାହାରେ କାହାର ମଲା ଶବ । ହିନ୍ଦୁ ସଧବା ସ୍ତ୍ରୀର ଶବ । ଶବାଧାରରେ ଖଇ ପଇସା ବିଞ୍ଚା ଚାଲିଛି । ରୋଷ୍ନି ଘରୁ ବାହାରି ଚାଲିଲା । ପ୍ରଶଂସା ଉଠୁଛି ଭଲ ଝିଅଟା । ପୁଞ୍ଜିପତି ଅଗରବାଲାର ସ୍ତ୍ରୀ । ଗତକାଲି ତାକୁ କିଏ ଖୁନ୍ କରିଛି, ତାର ହୀରାର ହାରଟା ପାଇଁ– ଖୁନ୍ କରିଛି ସେ ଯେତେବେଳେ ସ୍ୱାମୀ ନିକଟରେ ଶୋଇଥିଲା ।

ରୋଷ୍‌ନି ମନେ ମନେ ସେହି ଖୁନୀ ପ୍ରତି ଭୀଷଣ ରାଗିବାକୁ ଲାଗିଲା । କଣ ଆଉ କେତେବେଳେ ଖୁନ୍ କରିବାର ସମୟ ସେ ପାଇଲା ନାହିଁ । ହାୟ କେତେ ଆଶା କରି ଆଗାମୀ ପ୍ରଭାତର ପରିକଳ୍ପନାରେ ସେ ଶୋଇଥିବ । ସେ ନୀରବରେ ଘର ଭିତରକୁ ଗଲା । ଲତିଫ୍ ନିଶରେ ହାତ ମାରି ମାରି ଫେରୁଛି ।

ଇଦ୍‌ର ଚନ୍ଦ ଉଠିଛି ଘନାୟିତ ଆକାଶର ଗୋଟିଏ କୋଣରେ । କ୍ଷୀଣ ବକ୍ରରେଖା । ନବ ତରୁଣୀର ସଲଜ୍ଜ ହାସ୍ୟ ପରି ।

ରୋଷ୍‌ନିକୁ ଠିଆ କଲା ଆଗରେ ଲତିଫ୍ । ରାତି ଗଭୀର ହେବାକୁ ଲାଗୁଛି । ବଡ଼ବାବୁ ଘର ବୋହୂର ଗଳା ଶୁଭୁଛି– ଏତେ ରାତ୍ରିରେ ବାବା ଭୀଷଣ ପାଟି ! ଲତିଫ୍ ରାଗିଗଲା । ଆଚ୍ଛା ଭଦ୍ରଲୋକ ଏମାନେ– ରାତିଟା ତ ବିଶ୍ରାମର ସମୟ । ସେ ଦରବାଜା ଖୋଲି ଦେଖିଲା । ବଡ଼ବାବୁର ବୋହୂ କହୁଛି– ହେଉ ଯାହା କୀର୍ତ୍ତି ତ ଅର୍ଜ୍ଜିଲୁ । ସେଇଟାକୁ ସେଇ ଖଣା ଭିତରେ ପକାଇଦେଇ ଆ– ଏଇଟା ବଡ଼ବାବୁର ଝିଅ ପ୍ରତିମା । ଲତିଫ୍ ପିଲାଟି ବେଳୁ ତାକୁ ଦେଖିଛି । ଛାଡ଼, ମରନ୍ତୁ ସେମାନେ ।

ରୋଷ୍‌ନି କହିଲା– "କ୍ୟା– ?" ଲତିଫ୍ ତାର ଆଖି ବୁଜିଧରି ଲମ୍ବାଇ ଦେଲା ହୀରକର ହାର । ରୋଷ୍‌ନି ଆଖି ଖୋଲିଲା । କ୍ରମେ କ୍ରମେ ତାର ଘୃଣା, ହିଂସା ପ୍ରଜ୍ଜ୍ୱଳିତ ହେଲା– ମୋର ସବୁ ପୂଜାର ପରିଣାମ– ମୋର ଏତେ ସାଧନାର ଧନ ଏଇ ହାର ? କାହାକୁ ଖୁନ୍ କରି, ମୋ ଗଳାରେ ନାଗସାପ ପିନ୍ଧାଇ ଦେଉଛ ! ରୋଷ୍‌ନି ବେକରୁ ମାଳା ବାହାର କରି ଟିକି ଟିକି କରିଦେଲା । ଲତିଫ୍ ଅବାକ୍– ନିଷ୍ପନ୍ଦ ।

ରୋଷ୍‌ନି ଲତିଫ୍‌ର ଅଣ୍ଟାରୁ ଛୁରାଟା ବାହାର କରି କହିଲା– ଆଲ୍ଲା, ମୋର ଏତେ ପୂଜା ପରେ ଏ କେଉଁ ଶାସ୍ତି ଦେଲ । ମୁଁ ଅପରାଧ କରିଥିଲି । ଏଇଥର– ଏଇଥର ମୋତେ ତମ ପାଖକୁ ନେଇଯାଅ । ନିଜର ଗଳାରେ ସିଧା ଛୁରୀ ବିନ୍ଧିଲା । ଲତିଫ୍ ଧରି ପକାଇଲା । ସେ ଏବେ କାନ୍ଦୁଛି । ଅଶ୍ରୁ ଝରୁଛି ନୟନରୁ ।

–ନା ନା, ମୋତେ ଛାଡ଼ିଦେ । ଛାଡ଼ିଦେ । ତୋ ଦେହ ଛୁଇଁ ମୁଁ ଜଳପୋଡ଼ି ମରୁଛି । ତୁ ଆଲ୍ଲାର ଦୁସମନ୍ । ଇସ୍‌ଲାମର ଦ୍ରୋହୀ– ଇଦ୍ ମୁବାରକ ମୋତେ କରିବାକୁ ଦେ– ଏଇ ମୋର ରକ୍ତ ନେଇ ଆନନ୍ଦ କର । ରୋଜା ପାଳ ।

ଲତିଫ୍ ଛୁରାଟାକୁ ଟାଣିଆଣି ଥରଥର କଣ୍ଠରେ କହିଲା– ରୋଷ୍‌ନି ମାଫିଦେ, ରୋଷ୍‌ନି । ମୁଁ ଆଉ କେବେ କରିବି ନାହିଁ । ସେ ଛୁରୀଟାକୁ କାଠ ସନ୍ଧିରେ ତଡ଼ିଦେଲା । ଏତେବଡ଼ ବିଶ୍ୱସ୍ତ ତୀକ୍ଷ୍ଣ ଅସ୍ତ୍ରଟା ଖଣ୍ଡ ଖଣ୍ଡ ହୋଇ ତଳେ ଭାଜିପଡ଼ିଲା ।

ରୋଷ୍‌ନି ତଳେ ପଡ଼ିଗଲା । ପାଣି ଟୋପାଏ ପିଇନାହିଁ । ଡାକିଲେ ଉଠୁନାହିଁ । ଲତିଫ୍‌ର ଏ ଦୁନିଆରେ ରୋଷ୍‌ନି ଛଡ଼ା କିଏ ଅଛି ? ରୋଷ୍‌ନି ଚାଲିଗଲେ... ନା ନା ସେ ଚିନ୍ତା କରିପାରୁନି । ସେ ବାହାରକୁ ଆସିଲା, ଇଦ୍‌ର ଚନ୍ଦ୍ର ବୁଡ଼ିଯାଇଛି, ଉଜ୍ଜ୍ୱଳତା ଲିଭିଯାଉଛି । ସେ ଦୁଇହାତ ଉପରକୁ ଟେକି ଜୋର୍‌ରେ ପାଟି କରି ଉଠିଲା– ଆଲ୍ଲା ହୋ– ଆକବର– ବିସ୍‌ମିଲ୍ଲା– । ଗଭୀର ବେଗରେ ମେଘ ଧାଇଁ ଆସୁଛି । ବଜ୍ର ଓ ବିଜୁଳି ଆକାଶ ମଥିତ କଲେଣି । ନିରାଶ୍ରୟ ଭାବରେ ଲତିଫ୍ ଠିଆ ହୋଇଛି ଆକାଶ ତଳେ । ବରଷା ପାଣିରେ ଇଦ୍‌ର ସୌଖୀନ ବସ୍ତ୍ର ଭିଜୁଛି । କୁକୁର କଜିଆରେ ତାର ହୋସ୍ ଆସିଲା । ଖଣାତଳେ ଏଇଟା କ'ଣ ? ସେ ଦୌଡ଼ିଗଲା ।

କୋମଳମତି ସୁକୋମଳ ପାରିଜାତଟିଏ । ସେ ସଯତ୍ନରେ ବେକରୁ ରେଶମ୍ ସୂତା ଖୋଲିଦେଲା– ଏମିତି ସେ ବହୁତ କାଟିଛି କିନ୍ତୁ ଏ ତ ତା'ର ନୂଆ ଅନୁଭୂତି– ଆଉ କାହାପାଇଁ କେଜାଣି !

କାନ ପାଖକୁ ଆଣିଲା ତାକୁ । ନିଜପାଇଁ ନୁହେଁ ।

ବଞ୍ଚିଛି ତ ! ଆରେ କାନ୍ଦୁଛି ଯେ !

ବଜ୍ର ଓ ବିଜୁଳି ଆକାଶରେ ଖେଳୁଛି । ବିଜୁଳି ଭିତରେ ନବଜାତକର ମୁହଁଟି ଦେଖୁଛି– କି କାନ୍ଦ ସେ ! ପଛକୁ ଫେରି ଦେଖିଲା, ରୋଷ୍‌ନି ଠିଆ ହୋଇଛି ।

ତା' କୋଳକୁ ବଢ଼ାଇଦେଇ ଘର ଭିତରକୁ ଟାଣିନେଲା । ଘରସାରା ହୀରା ମୋତି ଭିତରେ ଇଦ୍‌ର ଚନ୍ଦ୍ର ଉଇଁଛି ସତେକି !

ଦୁଇଜଣ ନବଜାତଟିକୁ ଆଗରେ ରଖି ଆଣ୍ଠୁମାଡ଼ି ହାତପାତି କୋରାନ୍‌ର ଦୋହା ଗାଉଛନ୍ତି ।

ପାଖ ପଡ଼ିଶା ବଡ଼ବାବୁଘର ଝିଅ ପ୍ରତିମା ଯେ ଥରେ ହେଲେ ଦଶମାସ ପରିଶ୍ରମ କରି ଦେଖିନାହିଁ, କବାଟ ପାଖରେ କାନ ପାତିଥିବ କାଳେ !



# ଆଦ୍ୟ ଆଷାଢ଼ର ବିରହୀ ଯକ୍ଷ

ଉଆନ ଥାଉଜେଣ୍ଡ ଡେଜ୍– ହଜାରେ ଦିନ ! !

ଆଉ ଚମକ୍ ଲାଗୁନି କଥାରେ– ଦିନ ଗଣିବାକୁ ମନ ଲାଗୁ ନାହିଁ । ମନ ଆଉ ମୁଁ ପର୍ବତର ଶିଖରସ୍ଥ ସେନାଟୋରିଏମ୍‌ରେ କେତେଦିନ ବିତିଗଲାଣି; ମନକୁ ମୁଁ ଜଣାଇ ଦେବାକୁ ଚାହିଁନି ।

ମନର ପାଖ ବେଡ୍‌ରେ ସେଇ ଯେଉଁ ପଞ୍ଜାବୀ ଝୁଅଟି ଥିଲା ତା'ର ମୃତ୍ୟୁ ହୋଇଯାଇଛି । ହଜାରେ ଦିନକୁ ଅପେକ୍ଷା କରିବାକୁ ପଡ଼ିନି । ସାତ ଶହରେ ସେ ବାଟ ଖୋଜିଛି । କିନ୍ତୁ କି ସୁନ୍ଦର ଝିଅଟି । କି ଚମତ୍କାର ଗୀତ ଗାଏ ସେ । ଆଉ ସେ ମାଡ୍ରାସି ପିଲାଟି– ଦିନେ ଭାରି ଭଲ ବଂଶୀ ବଜାଉଥିଲା ବୋଲି କହନ୍ତି । ସେନାଟୋରିଏମ୍‌ରେ ଦୁଇଜଣଙ୍କର ଗଢ଼ି ଉଠିଥିଲା ଭଲ ପାଇବା । ସେମାନେ ପୁଣି ଫେରିଯିବେ । ପୁଣି ଘରସଂସାର । ସେ ପଞ୍ଜାବୀ ଲଳନା ଶାନ୍ତାର ଦିହରେ ଜଡ଼ାଇ ରଖେ ନିଜକୁ– ଛାଡ଼ିବାକୁ ରାଜି ନୁହେଁ । ନା ନା, ଶାନ୍ତା ମରିନି । ଏଇ ସକାଳୁ ସେ ଆସିଥିଲା । ମୁଁ ଓ ମନ ବିଛଣାର ଗୋଟିଏ ଧାରରେ ବସିଥିଲୁ । ଅଭିବାଦନ ଜଣାଇବା ପୂର୍ବରୁ ପକେଟରୁ ବ୍ରାଣ୍ଡି ବୋତଲ କାଢ଼ି ଛୋଟ ଗ୍ଲାସ୍ ଖୋଲି ଧରିଲା ଆଗରେ । ଢକଢକ କରି ନିଃଶେଷ କଲା ବୋତଲ– ମୋତେ ମଧ୍ୟ ଦେଲା ।

ମନ ଆଜକୁ ତିନିଦିନ ଶଯ୍ୟାଶାୟୀ । ଏଇ ଯେଉଁ ମେଘୁଆ ଶୀତ ଶୀତ ପାଗ ସେଥିରେ କାଶ ବଢ଼ିଛି । ଆଉ ବଢ଼ିଛି ଗଳାର ବେଗ । ବାହାରକୁ ଛାଡ଼ି ଦେବାକୁ ମନା । ଏହା ଆଗରୁ ଆମେ ବହୁତ ବୁଲିଛୁ । ବୋତଲ ପରେ ବୋତଲ ରମ୍ ବିଅର ବ୍ରାଣ୍ଡି ତଣ୍ଟି ତଳକୁ ଠେଲିଛି । ମନ ହସିଛି । ସେଇ ପଲ୍ଲୀ ଭିତରକୁ ଯାଇଛୁ ଯେଉଁଠି ମଣିଷ ଘରଦ୍ୱାର କରି ସ୍ୱାମୀ ପୁତ୍ର ସ୍ତ୍ରୀ ସହ ରହିଛି । ଗୋଟିଏ ଛୋଟ ଟିକି ପିଲାକୁ ମନ କୋଳକୁ ନେଇ କାନ୍ଦି ପକାଇଲା । ନାରୀ ମନ ତାର ଦୁର୍ବଳ ମୁହୂର୍ତ୍ତରେ ଆହୁରି ନଇଁଗଲା । କିଅ ଝୁଅଙ୍କର ମନ ! ମୁଁ ମୋ ଭିତରେ ବୁଝିଲି ଆଜି ପ୍ରଥମ କରି ମନ ମୋର କ'ଣ ? ପ୍ରିୟା, ବନ୍ଧୁ, ପ୍ରେୟସୀ ନା କ'ଣ ? କାହିଁ ମନ୍ତ୍ର ପଢ଼ି ତ କେବେ ବିବାହ କରିନି– ସରକାରୀ ଦପ୍ତରର ରେଜିଷ୍ଟ୍ରି କରି ତ ନାହିଁ, ଏ ପ୍ରେମର ମିଳନ ।

ଆଜିକୁ ସେଇ ସଞ୍ଜଟି ମୋର ସ୍ମୃତି । ବନ୍ଧୁ ଜିତେନ୍ ସହିତ ଥରେ ଦର୍ଜାର ଫୁଲ ତୋଳିବାକୁ ଯାଉଥିଲି । ମନ ଫେରୁଥିଲା ଦର୍ଜାରୁ । ସେ ହାତ ଦେଖାଇଲା ଭଡ଼ାଗାଡ଼ି ବୋଲି । ଠିଆ କଲୁ ଗାଡ଼ି । ଭଡ଼ାଗାଡ଼ି ନହେଲେ ବି ତାକୁ ସହରକୁ ନେଇ ଆସିଲୁ । ମୋଟରରୁ ଓହ୍ଲାଇଲା ବେଳକୁ ମୁଁ ଦେଖିଥିଲି ଫୁଲର ତୋଡ଼ା । ସେ ଖୁସି ହୋଇଯାଇଥିଲା । ମୋର ଫ୍ଲାଟ୍‌କୁ ସେ ବହୁତ ଥର ଆସିଛି । ମୋର ଅଳିଆ ବହିଗଦା, ମଦର ବୋତଲକୁ ସଜାଡ଼ି ଦେଇଛି, ଗୋଟିଏ ଧାରରେ କ୍ରମିକ ରଖି । ଆଉ ବହୁ ନିରଳସ ସଞ୍ଜରେ ଚପ୍, କାଟିଲେଟ୍ ପଚ୍ କଫି ତଳ ହୋଟେଲରୁ ମଗାଇ ଖାଇଛୁ । ସିନେମା ଦେଖିଛୁଁ– ଆଉ ସହରର ବହୁ ଦୂରକୁ ବୁଲିବାକୁ ଯାଇଛୁ । ମନ ଘରକୁ ମୁଁ ଯାଇଛି । ମୋର ମଳିଆ ଫ୍ଲାଟ୍ ପରି ତାର ନୁହଁ । ଚମତ୍କାର ସାଜସଜ୍ଜା– ବେଶ୍ ଆଭିଜାତ୍ୟର ସୂଚନା ମିଳେ । ସେଠାରେ ମୁଁ ରହିଛି । ତାର ପରିଚାରିକା, ଚାକରମାନେ ଯଥେଷ୍ଟ ସମ୍ମାନ ଦେଇଛନ୍ତି । ମନ ତାର ଅତୀତର ଦିନଗୁଡ଼ିକୁ କଥାରେ କହିବାକୁ ରାଜି ନୁହେଁ । ମୁଁ ଆଉ ଇଚ୍ଛା କରିନି । ବନ୍ଧୁ ଜିତେନ ଓ ପାର୍ଥସାରଥି ମୋତେ ଦେଇଛନ୍ତି ପ୍ରେରଣା– ଉତ୍ସାହ । ଜିତେନ୍ କହେ– ପ୍ରେମଟା ବ୍ୟାପକ, ହୁସିଆର ! ପାର୍ଥ ବିଜ୍ଞ ଲୋକ ପରି ଜଣାଇଛି– ଯାହା ପାଇଛୁ ତାହା ତୋରି ଭିତରେ ଜିଆଇଁ ରଖ । ତିନିଜଣ ଅବିବାହିତ । ଯୁଦ୍ଧ ପରେ ଆମର ତିନୋଟି ସମ୍ବଳ । ଗୋଟିଏ ପେଟ୍ରୋଲ ପମ୍ପ, ତିନୋଟି କାର୍ ଓ ଟ୍ରକ୍ ଏବଂ ସେଠାରୁ ଆମର ବନ୍ଧୁତା । ମୁଁ ପାର୍ଥକୁ ପାଏ ବର୍ମା ଫ୍ରଣ୍ଟରେ । ଗୋଟାଏ ଗୁଳିରେ ତାର ଗୋଡ଼ ତଳର ପେଣ୍ଡାଟା ସେତେବେଳେ ଫୁଟି ବାହାରି ଯାଇଥାଏ । ମୁଁ ତାକୁ ପାଇ ରାସ୍ତାରେ ବୋହିଆଣେ । ଖାଦ୍ୟ ଏବଂ ପାନୀୟ କିଛି ଦିଏ । ଜିତେନ୍ ଦେଖାଦିଏ ଏକ ମୁମୂର୍ଷୁ ଅବସ୍ଥାରେ । ସଙ୍ଗୀନ-ଗୋଳାବାରୁଦ ଯେତେବେଳେ କମ୍ପି ଉଠୁଥିଲା କୋହିମାରେ ଖାଦ୍ୟ ପକେଟରୁ ସରି ଯାଇଥିଲା, ସେତେବେଳେ ବଞ୍ଚିବାର ଆଶା ନଥିଲା । ଯେହେତୁ ଜିତ୍ ଆମ ନିକଟକୁ ଆସିଥିଲା । ଗୋଟିଏ ହାତରେ ପାନୀୟ ଆର ହାତରେ ରୋଟି । ଯୁଦ୍ଧ ସରିଯାଇଛି– ଆମେ ଫେରିଆସିଛୁ ସହରକୁ । କିଏ ହୋଟେଲ ଦୋକାନ ଖୋଲି ପକାଇଛନ୍ତି । ସମ୍ବଳ ମାତ୍ର କେଇଟା ଟଙ୍କାରେ ଜିତୁର କୌଶଳରେ ଯୁଦ୍ଧ ରଦିମାଲ ହିସାବରେ ମୋଟର ପାଇ ଯାଉ ।

ମନ କାଶୁଛି– ରକ୍ତ ପଡୁଚି । ଏହିପରି ବହୁ ଆସନ୍ତି ଓ ଯାଆନ୍ତି । ମୁଁ ମଧ ଆସିଛି– ମନ ବି ଆସିଛି । ମନକୁ ଫେରିବାକୁ ହେବ । ନା, ଆଉ ଚିନ୍ତାକରି ଲାଭ ନାହିଁ । ଏହି ଆଶାଟା ହିଁ ମନକୁ ଦୁର୍ବଳ କରିଦିଏ । କରିଦିଏ ପଙ୍ଗୁ ନିର୍ଜୀବ ।

ଟଙ୍କା ସରିଆସିଛି । ଆଉ ଦୁଇ ହପ୍ତାଏ ଯାଇପାରେ । ମୁଁ ମୋର ଖାଦ୍ୟ କମାଇଚି । ମନର ଓଷଧ ଖର୍ଚ୍ଚ ଦେବାକୁ ପଡ଼ିବ । କାଲି କିନ୍ତୁ ମୁଁ ତାର କରିଛି । ମନ ଶୋଇଛି । ନର୍ସ କହିଲେ– ବ୍ୟସ୍ତ କରନ୍ତୁ ନାହିଁ । ଆପଣଙ୍କ କୋଠରିକୁ ଯାଆନ୍ତୁ । ଦୂରରେ ନିର୍ଦ୍ଦେଶିତ ମୋର କୋଠରି । ସେ ଭିତରେ ଲୁଗାପଟା କମ୍ବଳ । ସେନେଟୋରିଏମକୁ ଆସି ବି ଗୋଟିଏ ମୁହୂର୍ତ୍ତ ମନଠାରୁ ତଫାତରେ ରହିନି । ଏହି ହଜାରେ ଦିନ । ଏହି ଭିତରେ ମୁଁ ପୂର୍ଣ୍ଣିମା ଆଣିବାକୁ ଋହେଁ ମୋର ଜୀବନର । କି ଫୂର୍ତ୍ତିରେ ଅଛନ୍ତି ରୋଗୀମାନେ ! ନାଚ ଗୀତ ! ଯେପରି ଟିକିଏ ହେଲେ କ୍ଲେଶ ନାହିଁ– କ୍ଲାନ୍ତି ନାହିଁ– ପାଖେଇ ଆସୁଥିବା ଦିନଗୁଡ଼ିକୁ ଜମା ଖିଆଲ ନାହିଁ । ଉପରେ ସିଲ୍‌କର ପହରଣ । ଲାସ୍ୟମୟୀ ଛନ୍ଦମୟୀ ରେଣୁ– ଏଇ ମାସେ ହେଲା ଯେଉଁ ଚପଳା ମାଡ୍ରାସୀ କିଶୋରୀଟି ଆସିଛି । ବଡ଼ ଗପକରେ– ମନର ବି ସାଙ୍ଗ । ମୋର ବାନ୍ଧବୀ ସେ ମୋ ପାଖରେ ବସେ– ବହୁତ କଥା କହେ । ନାରୀ-ନରର ଆଦିମ ପ୍ରେମର ସୂଚନା ତାର କଳା ଆଖି ଦିଓଟିରେ ଫୁଟିଉଠେ । ଯୁଗାନ୍ତକାରୀ– କେତେ ବି ଆଣେ– ସ୍ପନ୍ଦନ !! ରୂପ ରାଇଜର ରାଣୀ– ଦେବକୁମାର ଇନ୍ଦ୍ରସଭାର– ଇଜିପ୍ଟର ମମି– ପୀରାମିଡ୍ । ସବୁକଥାରେ ନିଜ କଥା ଭୁଲିଯାଏ !– ନିଜର ପ୍ରକାଶଟି ଯେମିତି କହିବାରେ ବାଧାପଡ଼େ ।

ଆଉ ସେଇ ମୂର୍ତ୍ତି– ମାଡ୍ରାସୀ ଯୁବକ ! କାଲି ତାର ଲଙ୍ଗ୍‌ସର ଏକେସ-ରେ ଫଟୋ ବାହାରିଥିଲା । କଣା କଣା ହୋଇଯାଇଛି ସବୁଟା । ଏଇଟା... ! ଡାକ୍ତର ମନା କରୁଛି– ବଂଶୀ ବନ୍ଦକର– ବନ୍ଦକର ମଦ ବୋତଲର ଠିପି । ମୂର୍ତ୍ତି ଖାତିର କରିନି । ଯେଇଟା ତାର ଶେଷ ସପ୍ତାହ ।

ମୁଁ ଗାଢ଼ ଆଶ୍ୱସ୍ତିରେ ରହିଛି । ଦରଜା ନିକଟରେ ପ୍ରତ୍ୟେକ ମିନିଟ୍ ଜଗିବାକୁ ପଡ଼ିଛି । ନର୍ସ ପରମିସନ ଦେଇନାହାନ୍ତି । ଦୁଇଟିଦିନ ଅଦର୍ଶନରେ ମୁଁ ଡାକ୍ତରଙ୍କ ଗୋଡ଼ଧରି ପକାଇଲି– ମୁଁ ମରିଯିବି– ନିଜକୁ ଭୁଲାଇବା ପାଇଁ ମୁଁ ଖୁବ୍ ମଦ ଖାଇଥିଲି । ତଣ୍ଟି ପର୍ଯ୍ୟନ୍ତ– କିନ୍ତୁ କିଛି ଟିକିଏ ବୋଲି କାଟୁ କରିନାହିଁ । ଦୁଇମିନିଟ୍ ଜାଗାରେ ଦୁଇଦିନ । କଥା କହିବା ମନା । ଅତି ସନ୍ତର୍ପଣରେ ଗଲି । ନର୍ସ ଋର୍ଟ୍ ଆଡ଼କୁ ହାତ ବଢ଼ାଇଲା ମୁଁ ମନା କଲି । ସେତକ ପଢ଼ି ମୁଁ ଦୁର୍ବଳ ନିଜକୁ କରିବାକୁ ଋହେଁନା । ଶୋଇଛି ମନ, ଓଠ ଦିଅଟି ଗୋଲାପରଙ୍ଗରୁ ନିଷ୍ପ୍ରଭ ହୋଇଯାଇଛି । ମୁହଁଟି ଉଜ୍ଜ୍ୱଳ

ଦିଶୁଛି । ଫେରି ଆସିବାର ଥିଲା । ମୋର ଆସିବା ଜାଣିପାରିଲା । ତମେ– ମୁଁ ରହିପାରିନି । ତାକୁ ଛାତି ଉପରେ ଜଡ଼ାଇ କାନ୍ଦି ପକାଇଲି । ସୈନିକ– ନରହନ୍ତା ଆଖିରେ ଅଶ୍ରୁ ! !

–ତମେ ଦୂରରେ ରହ । ଜାଣିଚ ରକ୍ତ ବେଶୀ ପଡୁଛି । ତମ ଦିହ ଖରାପ ହେବ– ତମ ଦିହ ଖରାପ ହେବ । ଦୂରେଇ ରହ ।

ନର୍ସ ସମର୍ଥନ କଲା । ଜାଣିଲି ସେଇଥିରେ କେବଳ ମନଠାରୁ ମୁଁ ତଫାତ୍ । କି ଜ୍ୱଳନ ସେଇ ଆଖି ଦୁଇଟିରେ । –ହାଇରେ ଝଲକାଏ ରକ୍ତ ! ସେ ରକ୍ତରେ ଅଛି ଆଇଁଷିଆ ଗନ୍ଧ– ଅଛି ଏକ ବିରାଟ ତୀବ୍ରତା ! ଏହାହିଁ ସୃଷ୍ଟି କରିଛି ବ୍ୟବଧାନ । ଏହା ମୋତେ ସେହି ପରକାଳକୁ ଠେଲିଦେବ । ଯେଉଁଠି ବଞ୍ଚିବାର... ।

ବାହାରି ଆସିଲି । ରାତିରେ ନିଦ ହେଲାନାହିଁ, ମଦ ଖାଇବାକୁ ଇଚ୍ଛା ହେଲାନାହିଁ । ସକାଳେ ସକାଳେ ଗୋଟାଏ ଚିଠି ପାଇଲି ଆଉ ସାତଶହ ଟଙ୍କା । ଚିଠିଟା ମର୍ମାନ୍ତିକ । ଜିତେନ୍– କମ୍ୟୁନିଷ୍ଟବାଦୀ । ତାକୁ ସରକାରୀ ପକ୍ଷ ସଂଘର୍ଷରେ ଗୁଳି କରିଛି । ଆଉ ପାର୍ଥ ଚଳାଉଛି କାରଖାନା– ତେବେ ଲିଜ ଆଉଟ କରିଛି । କାର ଦିଓଟି ଅଛି । ଟ୍ରକ ବିକି ପଠାଇଛି । ଟଙ୍କା– ଟଙ୍କା !

ମୋ ଛାତି ଭିତରେ ଏଇ କେଇଦିନ କଣ ଟିକିଏ ଅନୁଭବ କରୁଛି । ଖୁବ୍ ଜୋର୍‌ରେ କାଶୁଛି । ଆଉ ଖଙ୍କାର ସାଙ୍ଗରେ ରକ୍ତ ଦେଖୁଛି । ମୁଁ ଆନନ୍ଦରେ ଆତ୍ମହରା । ଏଥର ମନ ସହିତ ମୁଁ ରହିପାରିବି । ମୋତେ କେହି ଅଲଗା କରିଦେଇ ପାରିବେନି । ଡାକ୍ତର ପାଖକୁ ଧାଇଁଲି । ସବୁ ଜଣାଇଲି । ସେ ମୋର ଏ ଆନନ୍ଦ ଦେଖି ଅପ୍ରତିଭ ହେଲେ । ସେ ରାୟଦେଲେ– ସେଥିରେ ମୁଁ ମଳିନ ହୋଇଗଲି– ନା କିଛି ହୋଇନି । ତୁମର ଏ ଯେଉଁ ଲିଭର, ପଥର ପରି ମଦଖାଇ କରିଛ, ସେଥିରେ କଣ ସମ୍ଭବ ! !

ମନ୍ତବ୍ୟରେ ଚମକି ପଡ଼ିଲି ।

ସେଇ ଗଭୀର ରାତିରେ ଆଷାଢ଼ର ଆଦ୍ୟ ପହରରେ ଚନ୍ଦ୍ର ଯେତେବେଳେ ଭରା ହୋଇ ଉଠିଥିଲା ବନଗହନରେ ପଛପାଖ ଝରକା ଡେଇଁ ପଶିଲି । ଶୋଇଛି ମନ । କପାଳରେ ହାତଦେଲି– ଜର ଅଛି ।

ମନ, ମନ!

ସେ ଉଠିଲା । ତୁମେ ଆସିଛ ? ଜାଣେ, ନିଶ୍ଚୟ ଆସିବ । କାହିଁକି କରିଛ ଜାଣ । ମୁଁ ଯିମିତି ଆଉ– ପାଟି ବନ୍ଦ କଲି । ଧୀର ହୁଅ ମନ, ତମକୁ ମୋଠାରୁ କେହି ନେଇ ପାରିବେ ନାହିଁ– କେଇ ନୁହଁ ।

–ଶୁଣ ଅଧୈର୍ଯ୍ୟ ହୁଅନା, ତୁମକୁ କହିନି । ମୋର ମାଆର ଥିଲା ଏହି ରୋଗ । ବାପା ତ ନାହାନ୍ତି ।

–ଆଜି ସେକଥା ବନ୍ଦଥାଉ ମନ । ସେତକ ଦେଣା ପାଉଣା ବାକି ରଖି ଲାଭନାହିଁ, ତମେ କିନ୍ତୁ ଆଗରେ ଗଲେ ଜିତୁକୁ ଭେଟିବ । ତୁମକୁ ଅପେକ୍ଷା କରି ରହିଛି । ପାର୍ଥ ଏବେ ଶେଷ ଶଯ୍ୟାରେ ।

ତୁମେ ମୋତେ ମନେ ରଖିପାରିବ । ବେଶ୍ ଆରାମରେ ମୁଁ ରହିପାରିବି । ହଁ, ସେଇକଥା ଭାବୁଛି– କୁଆଡ଼େ ଯିବି ? ନା ନା, ମନ ସେକଥା ଚିନ୍ତା କରନା, ଯେତୋଟି ମୁହୂର୍ତ୍ତ ପାଇଁ ଆମେ ପାଇଛୁ ସେତକ ଜଳାଇ ରଖିବାକୁ ହେବ । ମଦର ଶେଷବିନ୍ଦୁଟିକୁ ବି ଗ୍ରହଣ କରିବାକୁ ହେବ । ବ୍ୟସ୍ତ ହୁଅନା ।

–ମନ ହସିଲା । ମୁଁ ବ୍ୟସ୍ତ ହେଉନି । ତମେ ହିଁ ଅଧୀର ହୋଇ ଉଠିଛ । ତମେ ହିଁ ତମକୁ ହରାଇ ବସିଛ । ତମେ ହିଁ ତମର ସ୍ଫୂର୍ତ୍ତି– ହାର ମାନିଲି ।

ଦୂର ପାହାଡ଼ର କନ୍ଦରରେ ଆଦିବାସୀ ପୁରୁଷ ରମଣୀ ନୃତ୍ୟରତ । ଛନ୍ଦରେ ଫୁଟି ଉଠିଛି ଅଭିବ୍ୟକ୍ତି– ସ୍ପନ୍ଦନ ।

କମି ଆସୁଛି ରାତ୍ରି– କମି ଆସୁଛି ହଜାରେ ଦିନ । ଝରକାଟି ଖୋଲିଦେଲି । ମୋ ବୁକୁ ଉପରେ ତାର ମଥା ରଖିଲି । ଦୁହେଁ ସେଇ ଚନ୍ଦ୍ର ଆଡ଼କୁ ଅନେଇ ରହିଲୁ ।

ହାତ ଘଡ଼ିଟି ଟିକ୍ ଟିକ୍ କରୁଛି । ମୁହୂର୍ତ୍ତ ପରେ ମୁହୂର୍ତ୍ତ, ସେକେଣ୍ଡ ପରେ ସେକେଣ୍ଡ ଗତି କରି ଚାଲୁଛି । ହାତରୁ ଖୋଲି ଝରକା ଦେଇ ଫିଙ୍ଗିଲି ।

ମନ କହିଲା, କ'ଣ ?

କହିଲି– ଶତ୍ରୁ !!

ନିସ୍ତବ୍ଧ ନିଶ୍ୱାସ– ଦୂର ବନାନୀରେ ବଣପକ୍ଷୀର ସ୍ୱର, ଆଉ ଗାଉଛି କିଏ ? କିଏ ? ସେଇ ବିରହ ବଇଁଶୀ– ମୂର୍ତ୍ତିର ବଇଁଶୀ ? ନା, ମୂର୍ତ୍ତି ସପ୍ତାହକ ଆଗରୁ ଚାଲିଯାଇଛି । ତା'ର ବାଉଁଶ ବଇଁଶୀର ସ୍ୱର ହଜିଯାଇଛି । ତେବେ କେଉଁ ବଇଁଶୀ ଏ ? କାହାକୁ ନିମନ୍ତ୍ରଣ କରେ ? ସୁନ୍ଦର ତା'ର ସ୍ୱର । କିନ୍ତୁ କି ଅଶାନ୍ତ ଦୁଃଖ– ଏ ପାପ ତାପ ମଳିନ ସଂସାରକୁ ଆଉରି ନିଜର କରିବାକୁ ଇଚ୍ଛା ହୁଏ ।

ଭୋର ହୋଇ ଆସୁଛି ।

ଝଲକାଏ ରକ୍ତ– ବହଳିଆ ରକ୍ତ । ଯେ ମୋତେ ମନଠାରୁ ସବୁଦିନ ବ୍ୟବଧାନ ସୃଷ୍ଟି କରି ରଖିଛି । ରଖି ପାରିଛି ।

ତଉଲିଆରେ ପୋଛିଦେଲି, ଶୁଆଇଦେଲି ।

ସେଦିନ ସୂର୍ଯ୍ୟର ପ୍ରଥମ କିରଣ ସେଇ ଝରକାରେ ଆସି ମନ ଉପରେ ବିଛୁଡ଼ି ପଡ଼ିଛି । ପଛରେ ଦେଖେଁ ଡାକ୍ତର-ନର୍ସ ଆହୁରି ଅନେକ । ମୁଁ ଆରାମଚେଆରରେ ବସିଛି ।

ମନକୁ ଚାହିଁଲି ।

କିନ୍ତୁ ମୋର ସେ ମନ ଆଉ ନଥିଲା ।



# ପ୍ରେମିକ ଦାସ୍

"ଆରେ ଭାଇ, କମଳା ମୋ ଆଡ଼କୁ ଯେମିତି କଟାକ୍ଷଘାତ କରୁଛି, ପ୍ରାଣଟା ହାୟ ହାୟ କରି ଉଠୁଛି"– ଗୋବିନ୍ଦ ଭାବବିହ୍ୱଳ ହେଲା ।

କହିଲି– "ହଇରେ, ସେ ତ ତୋ ଆଡ଼କୁ ମୋଟେ ଚାହିଁନି, ହସିଲା କେବେ ?" କୌତୂହଳ ଜମି ଉଠିଲା କିନ୍ତୁ ଗୋବିନ୍ଦର ମୁହଁଟା ଶୁଖିଗଲା । ଯେମିତି ଭାବଭଙ୍ଗୀରେ ସେ କଥାଟାର ସୂଚନା ଦେବାକୁ ଯାଉଥିଲା, ସମସ୍ତଙ୍କର ଯେମିତି ମନେ ହେବ ଗୋବିନ୍ଦର କାର୍ତ୍ତିକେୟ ଚେହେରା ଦେଖି ଯେ କେହି ଝିଅ ଲଭ୍ କରି ବସନ୍ତି । ଗୋବିନ୍ଦାର ଏମିତି ବାହାଦୁରି ନେବାଟା ଗୋଟାଏ ଅଭ୍ୟାସ । ସେ ଯେମିତି ବାହାଦୁରି ନିଏ ସେମିତି ଚାଲାକ ପିଲାଏ ବି ତାଠୁଁ ଆଦାୟ କରି ନିଅନ୍ତି ଥୋଡ଼ା ବହୁତ । "ଗୋବିନ୍ଦା, ତୋତେ ଦେଖି ପ୍ରଭାତୀ ହସି ଦେଇଚି" ଗୋବିନ୍ଦା ମନ କୁଣ୍ଢେମୋଟ, ସାଙ୍ଗେ ସାଙ୍ଗେ ଚାଲ, ସମଲେଶ୍ୱରୀ କେବିନ୍ । ମାଂସ ଆସିଗଲା ତା'ପରେ ସିଙ୍ଗଡ଼ା, ଚପ୍ ।

ଗୋବିନ୍ଦାର ପ୍ରେମ କରିବାଟା ଯେମିତି ହାଡ଼ ମଜ୍ଜାଗତ । ଯଦି ତାକୁ କେହି କହେ "ଗୋବିନ୍ଦା, ତୋତେ ସେ ଝିଅଟା ଲଭ୍ କରିବାର ଶୁଣିଲି" ତେବେ ପର ଅଂଶଟା କାନ ଦେଇ ଶୁଣିଯିବାକୁ ହେବ ପ୍ରଥମେ ତା' ସହିତ କେମିତି ଚିହ୍ନା ହେଲା, ସେ କେମିତି ତାଙ୍କ ଘରକୁ ଡାକିନେଲା, ତାଙ୍କ ମା' କେମିତି ସ୍ନେହ କଲେ ଇତ୍ୟାଦି ଇତ୍ୟାଦି । ମାନେ ତୁଣ୍ଡରେ ବାଟୁଲି ବାଜିବନି । ଧୈର୍ଯ୍ୟ ଧରି ସେତକ ଶୁଣିଲେ ଗୋବିନ୍ଦା ଖୁସ୍, ସାଙ୍ଗେ ସାଙ୍ଗେ ଚା ଜଳଖିଆର ଅର୍ଡ଼ର ଦିଆ ହେଇଯିବ । ଯଦି ତା'ର କଥାଗୁଡ଼ାକ ଓଜନ କରାଯାଏ ଏତିକି ଜଣାଯିବ ସତ ଯେ ସେ କୌଣସି ଝିଅ ପଛରେ ସାଇକେଲରେ ତା' ଘର ପର୍ଯ୍ୟନ୍ତ ଯାଇଥିଲା– ବାସ୍ ସେତିକି । ଯାହା କୁହନ୍ତୁ ତା'ର କଥା କହିବାର ଗୋଟାଏ ଶୈଳୀ ଅଛି । ତାକୁ ଯଦି ପଚରାଯାଏ, "ଗୋବିନ୍ଦବାବୁ, ଶାନ୍ତିଟି କେତେ ସୁନ୍ଦର କୁହନ୍ତୁ ତ !" ସେ ତତ୍କ୍ଷଣାତ୍ କହିବ, ଡାକ୍ତରଖାନା ପାଖରେ ସେ ଥା'ନ୍ତି, ତାଙ୍କ ବାପା... ଇତ୍ୟାଦି ଇତ୍ୟାଦି । ପରିଚୟଗୁଡ଼ା ବେଶ୍ ଯୋଗାଡ଼ କରିଥାଏ ତା'ପରେ ତ ଇତିହାସ ଆରମ୍ଭ– ଶାନ୍ତି କେମିତି ତା ଆଡ଼କୁ ଚାହିଁ ହସେ, କେମିତି ଦୈବାତ୍ ଖଣ୍ଡେ ନଭେଲ୍ ବହି ନେଇ ତା' ସହିତ ପରିଚୟ ହୁଏ, କେମିତି ନିମନ୍ତ୍ରଣ ପାଇ ତାଙ୍କ

ଘରକୁ ଯାଏ, ଏମିତି ବହୁତ ବହୁତ କଥା । ସେକଥା ବାଦ୍ ଦେଇ ଯଦି କହିଲେ, "ଆଚ୍ଛା, ମିସ୍ ବେହେରାଙ୍କୁ ଦେଖିଛନ୍ତି ନା ?" ସାଙ୍ଗେ ସାଙ୍ଗେ ମିସ୍ ବେହେରା ସହିତ ଲଭ୍‌ର ଦୀର୍ଘ କାହାଣୀ । ସେ ସମସ୍ତଙ୍କୁ ଜାଣେ । ଯୋଉ ଝିଅ ନାଆଁ ଧରିବେ ସେ କେମିତି ତାକୁ ଘନିଷ୍ଠ ଭାବରେ ଜାଣେ କହିଯିବ । ସେ ସମସ୍ତଙ୍କର ବାପଭାଇ ସମସ୍ତଙ୍କୁ ଜାଣେ । ତେବେ ସମସ୍ତଙ୍କ ତୁଳନାରେ କମଳା ପ୍ରତି ଗୋବିନ୍ଦାର ଟିକିଏ ବେଶୀ ଆଖି । କମଳାକୁ ନୀଳ ଶାଢ଼ି ଆଉ ମେଘରଙ୍ଗର ବ୍ଲାଉଜ କୁଆଡ଼େ ଭାରି ସୁନ୍ଦର ଦିଶେ । କମଳାର ରକ୍ତିମ ଚିବୁକରେ ଫେନିଳ, ଚହଳ, ତରଳ, ସରଳ, ଢଳଢଳ, ସୁଗୋଲ, ସୁନ୍ଦର ଦର ଦର ହସ କୁଆଡ଼େ ବିଜୁଳି ଭଳି କରେଣ୍ଟ୍ ଦିଏ ଗୋବିନ୍ଦା ଛାତି ଭିତରେ– ଏଇକ୍ଷଣି ଗୋବିନ୍ଦାର ଜାଗରଣ ସ୍ୱପ୍ନର ନାୟିକା ହଉଚି ମିସ୍ କମଳା ଦାସ୍ ।

ଦିନେ ସନ୍ଧ୍ୟାବେଳେ ଗୋବିନ୍ଦା ମୋ ପାଖରେ ହାଜର । ମୋ ହାତରେ ଖଣ୍ଡେ ସିଗାରେଟ ଗୁଞ୍ଜିଦେଇ ଆରମ୍ଭ କଲା "କଣ କରିବି କହିଲୁ, ଜାଗରଣ ସ୍ୱପ୍ନରେ ହାୟ" ଗୋଟାଏ ହାଇ ଛାଡ଼ିଲା । "ଏଥର ଗୋଟାଏ ରାସ୍ତା ପାଇଚି, ଗୋଟାଏ କବିତା ଉପହାର ଦେବି ବୋଲି ଠିକ୍ କରିଚି, କ'ଣ କହୁଚୁ ?" କହିଲି, "ହଁ ବେଶ୍ ତ" । କହିଲା, "ବେଶ୍, ଲେଖିଦେଲୁ ମୋ ପାଇଁ ଗୋଟାଏ କବିତା– ଲେଖିବୁ ଯେ ଏଇ– ମୁଁ ତମକୁ ସ୍ୱପ୍ନ ଦେଖେ– ଭବିଷ୍ୟତରେ ତମେ ସେଇ ନାୟିକା ନ ହେଲେ ମୁଁ ଆତ୍ମହତ୍ୟା କରିବି– ତମେ ଯଦି କୁହ ଯମପୁରକୁ ଯିବାକୁ ସେଠାକୁ ବି ଜାଣୁ ତ... ଲେଖିଦେ ଗୋଟାଏ" । କହିଲି, "ଆଚ୍ଛା ଲେଖୁଚି, ତୁ କିଛି ସମୟ ବାଦ୍ ଆ" । ହସି ହସି ଚାଲିଗଲା । ମୁଁ ଲେଖି ବସିଲି । ମୋତେ ଡିଷ୍ଟର୍ବ କଲା ପ୍ରମୋଦ– ହଇରେ କଣ ଲେଖୁଛୁ ଦେଖି... ପଢ଼ିଗଲା ।

"ସଖୀଗୋ ମୋର ବେଦନାର ଶତଦଳ..." "ହଇରେ ଏ କାହାର କିରେ ?" "ଗୋବିନ୍ଦାର କମଳା ପାଖକୁ" । ସେ ଖୁବ୍ ଜୋର୍‌ରେ ହସିଉଠି କହିଲା, "କମଳା ! ବାଃ ଆଚ୍ଛା କେବେ ଦୂତ ପଠଉଚି ?" କହିଲି, "ବୋଧହୁଏ କାଲି ପୋଷ୍ଟ କରିବ ଆଉ କମଳା ପାଇବ ପଅରିଦିନ" । ପ୍ରମୋଦ ହସି ଚାଲିଗଲା । ମୁଁ ଲେଖି ବସିଲି । ଗୋବିନ୍ଦା କିଛି ସମୟ ପରେ ପହଞ୍ଚି କବିତା ପଢ଼ି ଆନନ୍ଦରେ ଗଦ୍‌ଗଦ ହୋଇ କହିଲା ଏଇଥର ଠିକ୍ ହେଇଚି । ମୋତେ ନେଇ ସେ ଚାଲିଲା ସିନେମା ସେକେଣ୍ଡ ଶୋ'ରେ ।

ଠିକ୍ ଚାରିଦିନ ପରେ କଲେଜ ଗେଟ୍‌ରେ ମତେ ଦେଖି ଗୋବିନ୍ଦା ଯେଉଁ ନିବିଡ଼ ଆଲିଙ୍ଗନରେ ଆବଦ୍ଧ କଲା ମୋ ଛାତିର ରୋଲ୍ଡ ଗୋଲ୍ଡ ବୋତାମର ଦାଗ ଦୁଇଦିନ ପର୍ଯ୍ୟନ୍ତ ଛାତିରୁ ଯାଇନି । ସେଦିନ ସମଲେଶ୍ୱରୀ କେବିନ୍‌ରେ ଗୋବିନ୍ଦାର ପଇସା ଖରଚ ଦେଖେ କିଏ ! ମାଂସ, ରସଗୋଲା, ସନ୍ଦେଶ ପ୍ଲେଟ୍ ପରେ ପ୍ଲେଟ୍ । ପ୍ରମୋଦ ମଝିରେ ମଝିରେ ପାଟି କରୁଥାଏ "ଗୋବିନ୍ଦା ଭାଇ" ସାଙ୍ଗେ ସାଙ୍ଗେ ବରାଦ "ଯାଡ଼େ ଦେଇଯାଅ ରସଗୋଲା ଚାରିଟା" ।

ଗୋବିନ୍ଦା ନିରୋଳାରେ ମୋତେ ଚିଠିଟା ଦେଖେଇଲା– କମଳା ଲେଖିଚି ଗୋବିନ୍ଦା ପାଖକୁ– ସେ ତାକୁ ପ୍ରାଣରୁ ଅଧିକ ଭଲପାଏ– ତାକୁ ନ ଦେଖିଲେ ଦୁଃଖରେ କଟେ ଦିନ ଇତ୍ୟାଦି । ଏତିକି ମାତ୍ର ସନ୍ଦେଶ ଅଛି, ତୁମେ ଆଜି ରାତିରେ ବଗିଚା ଭିତର ଦେଇ ମୋ କୋଠରିକୁ ନିଶ୍ଚେ ଆସିବ– କମଳା । ମୁକ୍ତା ପରି ଅକ୍ଷର ଗୋଲାପୀ କାଗଜରେ ଲେଖା । ଗୋବିନ୍ଦା ପିଠିରେ ହାତମାରି କହିଲି, "ସାବାସ୍ ଗୋବିନ୍ଦଭାୟା" ।

ପରଦିନର ଘଟଣା ବଡ଼ କରୁଣ । ସକାଳୁ ଖବର ପାଇଲୁ ଗୋବିନ୍ଦା କମଳା ଘର ଚାକରଠଉଁ ଚୋର ବୋଲି ମାଡ଼ଖାଇ ଡାକ୍ତରଖାନାରେ ପଡ଼ିଚି । ପ୍ରମୋଦ କହିଲା– "ମଜା ପାଇଁ ପ୍ରଫୁଲ୍ଲ ଆଉ ମୁଁ ସିନା ଗୋବିନ୍ଦା ପାଖକୁ ଖଣ୍ଡେ ଚିଠି ଦେଇଥିଲୁ କମଳା ନାଆଁରେ, କିଏ ଜାଣିଥିଲା କମଳା ଘର ମୂର୍ଖ ଚାକରଟା ଏମିତି ଗୋଗଚ୍ଛ ବାଡ଼ିଆ ବାଡ଼େଇବ !"



# କ୍ଷମାଭିକ୍ଷୁ

ଆନନ୍ଦର ବଜାର । ଗାର୍ଲ ସ୍କୁଲ୍‌ର ଆନନ୍ଦ ବଜାର । ଆପେ ଆପେ ମନ ଭିତରେ କେତେ କଥା ଗୋଳେଇଘାଣ୍ଟି ହୁଏ । କେତେ ଗୁଡ଼ାଏ ସୁଶ୍ରୀ, ସୁଲୋଚନା, ସୁବେଶୀ, ସୁଷ୍ଠୁ ଚରୁଶୀଳାଙ୍କର କମନୀୟ ମୁଖଗୁଡ଼ିକର ଦର୍ଶନ ମିଳେ ଅନାୟାସରେ ! ଅବଶ୍ୟ– ଏଣ୍ଟ୍ରିଫି– ମାତ୍ର ଦୁଇ ଅଣା । ଏ ବଡ଼ ସୁଯୋଗ କିନ୍ତୁ– ଝୁଅ ଦେଖି ତାଙ୍କ ବିଷୟରେ ଡିସ୍‌କସନ୍ କରିବାର ସୁଯୋଗ ଇଏ । ତା'ଛଡ଼ା ଏ ଗୋଟିଏ ଫୂର୍ତ୍ତି, ଅନ୍ତତଃ ନୟନର ତୃପ୍ତି– ହୃଦୟର ଭାରା ଉପଶମ । ତା'ଛଡ଼ା ଆଉ କଣ ? ହଁ ତା'ପରେ ଦିଓଟି ମଧୁର ବଚନ– ଟିକେ ହସ– ହସରେ ଗରମ ବେଦନାର ବିଜ୍ଞପ୍ତି । ତା'ଛଡ଼ା– ପରିହାସ "ଏମିତି ହେଉଛି, କିଆଁ ସେମିତି ନ ହେବ" ଫଳରେ ସୁଷ୍ଠୁ ଚହାଣି ଭିତରେ ସାବଲୀଳ ଭଙ୍ଗିରେ କେତେ କଥାକୁହେ । ସେଇଟା ହିଁ ସବୁଠାରୁ ବଡ଼ କାମ୍ୟ– ବଡ଼ ଜିନିଷ ଏକା ।

ହଷ୍ଟେଲ୍‌ରେ ଚଞ୍ଚଲ୍ୟ, କାଳୀପଦ, ଭୁବନ ସମସ୍ତେ clean shave ହୋଇ ତିଆର ! ପ୍ରଭାକର ମୁହଁରେ ଆଫ୍‌ଗାନ ସ୍ନୋର ଶୁଭ୍ର ଅଥଚ ସୂକ୍ଷ୍ମ ଆସ୍ତରଣ । ବେଶ୍ ତୋଫା ଦିଶୁଛି । 'କବି' ଡାକନାମ ମୋରି– ପ୍ଲେକ୍‌ସ୍‌ର ହାଇକ୍ଲାସ୍ ପାମ୍ ସୁ ଉପରେ ରଙ୍ଗ ଦେବାରେ ଲାଗିଯାଏ । ଜନମୋହନ କେଉଁ ଲୁଗାଟା ପିନ୍ଧି ବାହାରିବ ସେଇ କଥା କହି ବୁଲୁଛି । ଆରେ "ଆପ୍ ରୁଚି ଖାନା ପର ରୁଚି ପହନ୍‌ନା" । ବନମାଳୀ ତାର ଲୁଜ୍ ପେଣ୍ଟା ପିନ୍ଧି ତିଆର । ଲୁଗାଟିରେ ତାର କ'ଣ ଟିକିଏ ଲାଗିଗଲା ବୋଲି ଆଉ ଖଣ୍ଡିଏ ଲୁଗା ଖୋଜିବାରେ ବ୍ୟସ୍ତ ଅଛି ଚଣ୍ଡୀଚରଣ । ଆମର ରବୀନ୍ଦ୍ରନାଥ, ଶ୍ରୀମାନ୍ ଭୋଳାନାଥ ଘୋଷ ପଞ୍ଜାବିରେ ରୋଲ୍‌ଡ଼୍ ଗୋଲ୍‌ଡ଼୍ ବୋତାମ ଲଗାଉଁ ଲଗାଉଁ ଗାଇ ଚାଲିଛନ୍ତି "କୋଥା ହତେ ଏଲେ ହେ ଉର୍ବଶୀ" ।

ଘଣ୍ଟିଟା ବାଜିଲା । ଦୁଇଟାରେ ଆନନ୍ଦ ବଜାର open ହୋଇଛି । ଆଗରୁ ଯିବାଟା ଶ୍ରେୟସ୍କର । ପ୍ରଭାକର ସିଲ୍‌କ୍ ରୁମାଲରେ କାଳୀପଦ ଠାରୁ Evening in Paris ଢାଳୁ ଢାଳୁ କହିଲା, "କିହୋ କାଳୀପଦ, ବେଗି ବାହାର ମ, don't while your time in vain" କବି ହସିଲେ । "ପ୍ରଭାକରବାବୁ ବଂଶୀସ୍ୱନ ଉଚ୍ଚାଟ ହେଲାଣି

କି ?" କାଳୀପଦ କହିଲା "କବି, ବେଗି ବାହାରିପଡ଼ ନହେଲେ ଗୋବିନ୍ଦ ବିଚ୍ଛେଦେ ମଥୁରା ନାରୀର ରୂପ ଧରିବ ।" କବି ଯୋଡ଼ିଲା, 'ଅସଲ, ଅସଲ ବଛା ବଛାମାନେ ବାହାରି ପଡ଼ନ୍ତୁ, ଆମେ ତ ବେଟେଲିୟନର ଲାଷ୍ଟ୍ ଗ୍ରୁପ୍ । ଗିରୀଶଟା କେଉଁଆଡ଼େ ଥିଲା ଝଡ଼ପରି ପହଞ୍ଚି କହିଲା– 'ତୁମେ ପଛେଇ ଗଲେ ଖୋରାକ ପାଇବନି ଯେ କବି–' ପ୍ରଭାକର ଜୋରରେ ହସି ଉଠି କହିଲା, 'ଆରେ ଠିକ୍ ତ ତମ ପାଇଁ ତ ଯାଉଛୁ । ତୁମେ ରଚନା କରିବ କବିତାର ଝରଣା, ଆମେ ଥିବୁ ତମ ପଛରେ– କଣ କହୁଛ ? କହିବୁଁ– 'ଆମାଦେର କବି– ଆମାଦେର କବି'– ଭୁବନ ସୋସାଲିଷ୍ଟ ପାର୍ଟିର ଲିଡ଼ର । ସିଏ କହିଲା, "ତମେ ଗୁଡ଼ାଏ ନିହାତି ଅପଦାର୍ଥ– ବାହାର ତ । ରୂପ ଦେଖାଇବା ଯୁଗ ଏ ନୁହେଁ– ଶ୍ରମିକ ହେବାକୁ ହେବ– prompt ହେବାକୁ ହେବ" । କାଳୀପଦ କହିଲା, "ସାବାସ୍ ବାବା ! Nasty politician ପାଞ୍ଚ ଟଙ୍କା ଗଜର ପଞ୍ଜାବି ପିନ୍ଧି ethelred the unready କଥା କହୁଛନ୍ତି ଦେଖ..."

ସ୍ନୋ-ବୋଳା ମୁଖଦେଶ, ଦେହରେ ଖଦି ପଞ୍ଜାବି, ସେଣ୍ଡୋ ଗେଞ୍ଜି, ସୁସ୍ପଷ୍ଟା ସେନଗୁପ୍ତ ଧୋତି । ହାତରେ ରିଷ୍ଟୱାଚ୍ ଆଉ ଗୋଡ଼ରେ ଚିକ୍ ଚିକ୍ କରୁଛି ଗ୍ଲେଜ୍‌ଟିକ୍ ଜୋତାର ରେଞ୍ଚ୍ ରେଞ୍ଚ୍ ଶବ୍ଦ । ରୁମାଲ ଭିତରୁ Evening in Parisର ସୁବାସ ନେଇ ବାହାରି ପଡ଼ିଲେ ନଅଟି ସୁଦର୍ଶନ– ସୁନ୍ଦର-କାନ୍ତ ଯୁବକର ଦଳ, ପଥରେ ହସର ଜୁଆର । ପ୍ରଭାକର ତାରି ଗତ ଜୀବନରେ କେତୋଟି ଆନନ୍ଦ ବଜାର ଦର୍ଶନର ସୁବିଧା ସୁଯୋଗ ପାଇଛି । ସବୁ ବାଢ଼ି ବସିଲା । ବାଟରେ ଖଣ୍ଡିଏ ଖଣ୍ଡିଏ ଧଳାପିକାର ସଦ୍‌ବ୍ୟବହାର କରାଗଲା । ସମସ୍ତେ ଏକାବେଳେ ଗାର୍ଲ ସ୍କୁଲର ଗେଟ୍‌ରେ ପହଞ୍ଚିଲେ । ଦିଅଣା ଦେଇ ଖଣ୍ଡିଏ ପାସ୍‌ପୋର୍ଟ ନେଇ ପ୍ରବେଶ କଲେ ଜଣେ ଜଣେ । କଥା ହେଉଛି ଦୁଇ ଅଣା ଦେଇ ଆପଣ ପ୍ରବେଶ କରିପାରିବେ ମାନେ କେତେଗୁଡ଼ିଏ ସୁନ୍ଦରୀ ତନ୍ୱୀ କିଶୋରୀଙ୍କର ମୁଖ ଦର୍ଶନ କରିବେ । ଅବଶ୍ୟ ରସିକ ଥିବେ ଯଦି କହିବେ, "ମୋର ଦୁଇଶହ ଟଙ୍କା ଉଠିଗଲା ହେ ।" ସେ ଯା'ହେଉ ସେଇଠି ପଇସାର କାରବାର । ଆପଣ ପ୍ରବେଶ କରିଛନ୍ତି ଯେତେବେଳେ ଆପଣଙ୍କୁ ସମସ୍ତ ଜିନିଷ ଦେଖିବାକୁ ହେବ । ପ୍ରବେଶ କରୁ କରୁ ଆପଣଙ୍କୁ ବହୁତ ଥର ପାନ ଖାଆନ୍ତୁ, ସିଗାରେଟ୍ ଖାଆନ୍ତୁ, ଚିନାବାଦାମ ଖାଆନ୍ତୁ, ଚେନାଚୁର ଖାଆନ୍ତୁ, ବହୁତ ଅନୁରୋଧ ଆସିବ । କିଶୋରୀଗୁଡ଼ିଏ ଆପଣଙ୍କୁ ଅନୁରୋଧ କରିବେ ଅନ୍ତତଃ ସେଗୁଡ଼ିକ ମାନିନେବା କଥା– ଛାତ ଟାଣ

ଥିଲେ ତ ଅନ୍ୟ ପରେକା କଥା । ସିଗାରେଟ୍, ପାନ ଦେଲେ ଆଉ କହିବେ ଖୁବ୍ ଗମ୍ଭୀର ହୋଇ ହସ ଉକୁଟାଇ ଯେମିତି ମସ୍ତବଡ଼ ବ୍ରହ୍ମଚାରୀ "ମାଫ୍ କରିବେ ମୁଁ ପାନ କି ସିଗାରେଟ୍ କିଛି ଖାଏ ନାହିଁ ।" ତେବେ ଚେନାଚୁର କଥା– ଚିନାବାଦାମ କଥା– ଅବଶ୍ୟ ଖାଇବେ । ଏ ଭିତରେ ମନେ ରଖିଥିବେ କେପ୍‌ସଟାନ ଖଣ୍ଡି ଦିଅଣା ଓ ପାନ ଗୋଟି ଦି' ପଇସା ।

ପ୍ରଥମେ ପ୍ରଥମେ କବି ପଇସା ବଞ୍ଚାଇବାକୁ ତିଆର, ପାନ, ସିଗାରେଟ୍ ଆଦିରେ । ପ୍ରଭାକର ତାର past experience ନେଇ କହିଲା, "ଦେଖ କବି, ପଇସା ଖେଳେଇବାର time ଅଛି, not now" ।

ଭାଗ୍ୟପରୀକ୍ଷା– ଲଟାରି କରିସାରି ଗୁପ୍ତଧନ ଆବିଷ୍କାର ଦେଖିବାକୁ ବାହାରିଲେ, ଜଣକୁ ଅଣାଏ ପଇସା । ସମସ୍ତେ ଯାଇ ଦେଖି ଆସିଲେ– କେହି କାହାକୁ ଆଉ କହୁନାହାନ୍ତି କଣ ଦେଖିଲେ । ଶୁଣ ଶୁଣ ଗୋଟାଏ ବଡ଼ ଆରଶି ଅଛି । ନିଜକୁ ସେଇଠି ଆବିଷ୍କାର କରିବ ।

ଗୋଟାଏ ଚକର ମାରି ନଅଟି ବନ୍ଧୁ ପଶିଲେ refreshment roomରେ । ଚମତ୍କାର ସାଜସଜ୍ଜା ! ତା'ଠାରୁ ବେଶୀ ଶ୍ରୀମତୀମାନଙ୍କର । ତାଙ୍କ ହାତରୁ କପେ ଚାହା... ହାୟ, Good heavens !!

ଦୁଇଟି ଟେବୁଲରେ ଆଠଜଣ । ବାକି ପଡ଼ିଲା ଏଇ 'କବି' । ସେ ଯାଇ ଅଲଗା, ଏକାକୀ ଗୋଟିଏ କଣରେ ବସିଲା, serve କରିବାକୁ କେତେଜଣ ଶ୍ରୀମତୀ ଲାଗିଲେ । ହାୟ ତମ ସୌଭାଗ୍ୟ କିଏ ନ ଖୋଜେ !

ସମସ୍ତେ ଡାକନ୍ତି ତାକୁ 'କବି' । କାରଣ କେତେଗୁଡ଼ାଏ ଗୁଣ ତାର ଥିଲା, ତେବେ କଣ କି ସେ ଟିକିଏ ରାଗୀ, କବି ହେଲେ ଯେପରି ହୁଅନ୍ତି ତା'ଠାରୁ ସେ ଭିନ୍ନ । ଅର୍ଥାତ୍ ଦୁର୍ଭାଗ୍ୟକୁ 'କବି' ଭାଗ୍ୟକୁ ପଡ଼ିଛି ଗୋଟିଏ atomic bomb, ଗୋଟାଏ ଜବରଦସ୍ତି ଟୋକୀ ! ମୁହଁରେ ହସ, ରାଗ ଖୁବ୍ କମ୍ । ସେ ଗମ୍ଭୀର ହୋଇ ଲୁଚି ତରକାରି ଦେଇ ଗଲା । ଚାହାଟା ଦେଇ ଫେରିଲା ବେଳକୁ ରାଗି ଉଠିଲା ସେ ।

ପ୍ରଭାକର, କାଳୀପଦ କ'ଣ ହେଲା ବୋଲି ପାଟି ଛାଡ଼ିଲେ । ଝିଅଟି ବିଜୟ ଦର୍ପରେ କହି ଚାଲିଥାଏ– ରାଗରେ ମୁହଁଟା ନାଲି, "ଭଦ୍ରତା ନଜାଣି ଆସିଛନ୍ତି କିପରି ?

ଲାଜ ହୁଏ ନାହିଁ ଗୋଟାଏ ଝିଅର ପଣତକାନି ଟାଣିବାକୁ... ଇତ୍ୟାଦି ।" କବି ଆମର ମଧ୍ୟ ଗମ୍ଭୀର ହୋଇ ଠିଆ ହୋଇଗଲେଣି ଏକ Novel ପଶ୍ଚାତରେ । ଝିଅ ସମସ୍ତେ ଜୁଟିଗଲେ "କଣ ହେଲା ଲୋ ଶାନ୍ତି, କଣ ହେଲା ?" ଏ ଭିତରେ ହେଡ୍‌ମିଷ୍ଟ୍ରେସ ହାଜର । କବି ତାର ବକ୍ତବ୍ୟ ଆରମ୍ଭ କଲା, "ଦେଖନ୍ତୁ, ମୁଁ ଏଠାକୁ ମାନ-ଇଜ୍ଜତ ଦେବାକୁ ଆସିନାହିଁ । ବହୁତ ଗୁଡ଼ାଏ କଥା କହିଯାଉଛନ୍ତି, ଭଦ୍ରତା ଖାତିରରେ କିଛି ନାହିଁ । ଆପଣ କଣ ଜାଣନ୍ତି ଯେ ଏଇଟା କହିବାର ଭଦ୍ରତା...

ଶାନ୍ତି ରାଗି କହିଲା, "ନା, ପଣତ ଝିଙ୍କିବାଟା ଭାରି ଭଦ୍ରତା ।" ସାଙ୍ଗମାନେ ତା ମୁହଁ ବନ୍ଦ କରି ହେଡ୍‌ମିଷ୍ଟ୍ରେସ୍‌ଙ୍କ କହିବା ଅନୁଯାୟୀ ଘର ଭିତରକୁ ଟାଣିନେଲେ । ଶାନ୍ତିର ଆଖି ଦିଇଟା କୁରାଳ ଚକ୍ର ପରି କବି ଆଡ଼କୁ ଘୂରୁଥାଏ ।

କବି କହି ଚାଲିଲା, "ଦେଖନ୍ତୁ, ସେ ମୋତେ ଚାହାଁଦେଇ ଚାଲିଯାଉଥିଲାବେଳେ, ବାଟରେ ଟେବୁଲ୍ କଣରେ ପଣତକାନିଟା ଅଟକି ରହେ, ଫଳରେ କିଛି ନ ବୁଝି ସେ ମୋ ଉପରେ ନିଆଁବାଣ । ଏଇଟା ମୁଁ ପସନ୍ଦ କରେନି ।" ପ୍ରଭାକର, କାଳୀପଦ ପ୍ରଭୃତି ସାଙ୍ଗଦେଲେ, କହିଲେ, ଏକଥା ଠିକ୍– ଦେଖିଛନ୍ତି ସେମାନେ । ହେଡ୍‌ମିଷ୍ଟ୍ରେସ୍ କହିଲେ, "ଦେଖନ୍ତୁ, ଆପଣ କିଛି ମନେ କରିବେ ନାହିଁ, ଝିଅଟା ବଡ଼ ରାଗୀ । କହିଲା ବେଳକୁ କିଛି ତାର କାଣ୍ଡଜ୍ଞାନ ନଥାଏ ।" କାଳୀପଦ କହିଲା, "ସେ ରାଗିପାରନ୍ତି, ତା'ବୋଲି ଭଦ୍ରଲୋକଙ୍କୁ ଅପମାନ ଦେବାର ଅଧିକାର ତାଙ୍କର ନାହିଁ ।" ହେଡ୍‌ମିଷ୍ଟ୍ରେସ୍ ଘର ଭିତରକୁ ଚାଲିଗଲେ । ଘର ଭିତରୁ ଶୁଭୁଥାଏ "ଶାନ୍ତି, ତମକୁ କ୍ଷମା ମାଗିବାକୁ ହେବ, ସେମାନେ ଭଦ୍ରଲୋକ ।" ଶାନ୍ତି କହୁଥାଏ, "ସେମାନେ ହୁଅନ୍ତୁ ଭଦ୍ରଲୋକ– କଲେଜରେ ପଢ଼ନ୍ତୁ, ମୁଁ ପାରିବି ନାହିଁ ଦିଦି, ମୁଁ ଦୋଷ କରିନାହିଁ ।" ହେଡ୍‌ମିଷ୍ଟ୍ରେସ୍ ଆସି କହିଲେ, ତାର ବ୍ୟବହାରରେ ମୁଁ ବଡ଼ ଦୁଃଖିତ । Please don't mind, Forget it just like a good man ।

ବାଟରେ ଶୁଣ୍ ଶୁଣ୍ ଦୋଷୀ ହେଉଛି କବି, କାନି ଟାଣି ଦେଇଛି ସେ । ତେବେ ଏତେବଡ଼ ପରିଣାମଟା ଆଶା କରିନି । ସମସ୍ତେ କହିଲେ, "ଝିଅଟା ଅପମାନ ଦେଇଦେଲା ।" କଲେଜସାରା ରାଷ୍ଟ୍ର, କିଏ କିଏ ଅତିରଞ୍ଜିତ କରି କହିଲେ ଜୋତା ଉଞ୍ଚାଇଥିଲା ସେ । ପଦ୍ମିନୀ, ବିଷ୍ଣୁପ୍ରିୟା ପ୍ରଭୃତି କଲେଜ ଝିଅମାନେ କହିଲେ, "କ'ଣ ଶାନ୍ତି ପରା ଭାରି ଲାତ ଦେଲା" । ମନେ ହେଉଥାଏ ପାଆନ୍ତି କି ଥରେ ଦେଖେଇ

ଦିଅନ୍ତି ମୁଁ ବି ଗୋଟେ ଇସ୍ପାତ୍– ଝୁଅଟା କଥା ମନେପଡ଼ିଲେ ତାର ସେଇ ଆଖି– କେଡ଼େ ରାଗୀ– ଗୋଟାଏ ଜଳନ୍ତା ନିଆଁ ସେ ।

ପରୀକ୍ଷା ଦେଇ ଘରେ ପହୁଞ୍ଚୁ ନ ପହୁଞ୍ଚୁ ବୋଉ ଧରି ବସିଲା, "ତୁ, ବାହା ହୋ, ତୋ ଦି'ହାତ ତ ଦେଖିବେ ଦେଖିବେ ବୋଲି ତୋ ବାପା ଚାଲିଗଲେ । ତୁ କ'ଣ ଚାହୁଁଛୁ ମୋ ଦିହକରେ ବି ହବ ନାଇଁ?

ବୋଉର ଲୁହ– ରକତ ଚିପୁଡ଼ା ଲୁହ ବଡ଼ ବାଧେ । ବାପା ଆଉ ନାହାନ୍ତି । ବୋଉର ଆଖିରେ ଲୁହର ଝର ଫୁଟିଛି । ଭାବୁଥିଲି... ଭାଉଜବୋଉ କହିଲେ, "କ'ଣ ଭାବୁଛ, ଯେଉଁ ଦେଶରେ ଥିଲ ସେଇଠି ପରା ତମ ପାଇଁ ସୁନାନାଖି କନିଆ ଜଗି ବସିଛି ।" "ମାନେ?" ହତଭମ୍ବ ହେଲି । "ହଁ ହଁ ସେଇ ସମ୍ବଲପୁରରେ ଝିଅର ବାପା, ବାପାଙ୍କ ସାଥିରେ ଖୁବ୍ ବନ୍ଧୁତା ଥିଲା, ସେ କହି ପଠେଇଛନ୍ତି ଜାତକ ପଟିଛି– ନାମ ତାର ଶାନ୍ତି ।"

ଚମକି ପଚାରିଲି– କ'ଣ କହିଲ? ସେ ବଡ଼ ପାଟିରେ କହିଲେ "ଶା- ନ୍ତି" । ଛାତି ଥରାଇ ନିଶ୍ୱାସ ବହିଲା । ଭାବିଲି, ନା ନା, ସେ କାହିଁକି ହେବ । ଜାତକ ବା ମିଳିବ କିପରି । ତାର ତ ସିଂହ ରାଶି ହେବ ନିଶ୍ଚୟ ।

ଯା'ହେଉ ବୈଶାଖରେ ଦୁଇହାତ ହେବାକୁ ହେଲା । ବାଟସାରା କାଳୀପଦକୁ ପଚାରୁଥାଏ– "ସେ ଟୋକୀ ନୁହେଁ ତ– ନହେଲେ ମୁଁ ବମ୍ବେ ମେଲ୍‌ରେ ଯାଉଛି ।" ସେମାନେ ଦମ୍ଭ ଦିଅନ୍ତି । ଦି'ଥର ଛାତିଟା ଆଉଁଶି ପକାଏ ।

ବାସର ରାତି, ଭାଉଜବୋଉ କବାଟଟା ଧଡ଼କରି କିଳିଦେଲେ, ପ୍ରଥମେ ବାସର ପ୍ରଦୀପରେ ମୁଖଟି ଦେଖିନେବାକୁ ହୁଏ । ଓଢ଼ଣାଟା ଖୋଲି ଦେଖେ– ପାଟି ମୋର ଅଠା ଅଠା ହୋଇଗଲା– "ତମେ ଏ-ଠି, ଏଁ ଶାନ୍ତି!" ସେ ହସିଲା । ମୋର ପଦଯୁଗଳରେ ତାର ମଥାଟି ନଇଁଆସିଲା, ମନେହେଲା ଅତୀତର ଦୋଷଯାକର କ୍ଷମାମାଗି ନେଇଛି ।

ଯାହାହେଉ କାଉଁରିକାଠି ଭାଙ୍ଗି ନାହିଁ ଯେ ନଇଁଛି । ତେବେ ଭବିଷ୍ୟତ କଥା କେମନ୍ତେ କହିବି!



# ରକ୍ତର ଆହୁତି

ଧାରା ଶ୍ରାବଣର ଚିହ୍ନ ମରି ଆସିଥାଏ ।

ଚିର ଶ୍ୟାମଳତା ଉପରେ ମୁକ୍ତା ବିନ୍ଦୁର ଚିତ୍ର ଶିଶିର ଆଙ୍କି ଚାଲିଛି । ପୃଥିବୀର ଝଡ଼ତୋଫାନ ଶେଷ ହୋଇଯାଇଛି– ତେବେ ପ୍ରକୃତିର ବିକଶିତ ଚିତ୍ର ମରିଯାଇଛି– କିନ୍ତୁ ମରିପାରିନି ହୃଦୟର ବେଦନା– ହୃଦୟର ରସାଣିତ ପ୍ରକୃତି । ଯେଉଁ ପ୍ରକୃତି ମଣିଷ ଭିତରେ ଥାଇ ମଣିଷକୁ ଦେଖାଇ ଆସିଛି ଅମରତ୍ୱ– ସେଇ ପ୍ରକୃତି ଆଜି ଧ୍ୱଂସର ଚିତ୍ର ଦେଖାଇ ଚାଲିଛି– ସେଇ ପ୍ରକୃତି ଆଜି ମନୁଷ୍ୟର ଅଧୋଗତିର ଚିତ୍ର ବିକଶିତ କରିବାକୁ ଉନ୍ମୁଖ ।

ମଣିଷ ଜାତି– ଭାରତୀୟର ପ୍ରକୃତି ଯୁଗେ ଯୁଗେ ଯେଉଁ ଅମର କାବ୍ୟଗାଥା ଉନ୍ମୀଳିତ କରିପାରିଛି, ତାହାକୁ ଚିତ୍ର କରି– ସେହି ଶତ ସାଧନାକୁ ଉପସଂହାର କରି ବୋଧହୁଏ ଆଜି ମନୁଷ୍ୟ ଭିତରେ ବିଶ୍ୱାସ ହରେଇଛି । ମନୁଷ୍ୟ ଜାତି ଆଜି ଯୁଦ୍ଧ ମାଗିଛି ସ୍ରଷ୍ଟା ନିକଟରେ । ସୃଷ୍ଟିର ଏ ଅଦମ୍ୟ ଚେଷ୍ଟା ତଳେ ମନୁଷ୍ୟ ମନୁଷ୍ୟକୁ ହିଁ ମାରିବାକୁ ଶିକ୍ଷା କରିଛି ବୋଧହୁଏ । ଭାରତବର୍ଷ ଯେ ଶହ ଶହ ଲକ୍ଷ ଲକ୍ଷ ମୁନିଋଷିଙ୍କର ଆବାସସ୍ଥଳ, ଯାହାର ଦର୍ଶନ ପୃଥିବୀରେ ଯୁଗେ ଯୁଗେ ଆଦର ପାଇ ଆସୁଛି, ସେହି ବିଶ୍ୱବନ୍ଦ୍ୟ ଭାରତରେ ଜଳି ଉଠିଲା ଅଗ୍ନି– ଉଦୟ ହେଲା ପ୍ରଳୟ, ସେହି ୧୬ ତାରିଖ ଅଗଷ୍ଟ ୧୯୪୭ ।

କଲିକତାର ହରିସନ ରୋଡ଼ ନିକଟରେ ଆମେ କେତେଜଣ ମିଶି ମେସ୍‌ଟିଏ ଗଢ଼ିଥାଉ । ମେସ୍ ପାଖରେ କେତେଜଣ ବଙ୍ଗାଳୀ ଭଦ୍ରଲୋକ ଥାଆନ୍ତି । ଅତୁଲବାବୁଙ୍କର ଘରଟି ଆମର ମେସ୍‌କୁ ଲାଗି । ଅତୁଲବାବୁ ଇମ୍ପିରିଆଲ ବ୍ୟାଙ୍କର ଜଣେ କର୍ମଚାରୀ । ତାଙ୍କର ବ୍ୟବହାର ଅତି ମଧୁର ଓ ସେ ଜଣେ ଅମାୟିକ ଧରଣର ଲୋକ । ମୁଁ ତାଙ୍କ ସହିତ ଆଳାପରେ ଅନେକ ସମୟ କଟାଏ । ତାଙ୍କ ଟିକି ଝିଅ ରାଣୀ ମୋ ସହିତ ବେଶ୍ ମିଶେ, ଖେଳେ । ସେ ମୋତେ ତାର ଯେପରି ଏକ ଅନ୍ତରଙ୍ଗ ବନ୍ଧୁ ବୋଲି ଧରି ନେଇଥାଏ । ଅତୁଲବାବୁଙ୍କର ଉଚ୍ଚ ଶିକ୍ଷିତା ସ୍ତ୍ରୀ ମଧ ମୋତେ ଖୁବ୍ ଭଲପାଆନ୍ତି । ଏ

ଦୁଇଜଣଙ୍କର ଭଲପାଇବା ଯେତେ ମୋତେ ବାନ୍ଧିପାରି ନଥିଲା ରାଣୀର ବନ୍ଧନ ସେତେ ନିବିଡ଼ ନିରବଚ୍ଛିନ୍ନ ହୋଇ ଉଠିଥିଲା । କଲେଜରୁ ଆସିଲା ବେଳକୁ ତା'ଲାଗି ପ୍ରତିଦିନ କିଛି ନା କିଛି ଆଣେ । କଲେଜରୁ ଆସିଲେ ସେ ମୋ ପାଖକୁ ଆସେ । ଏହି ପ୍ରତିଦିନ ଯିବାଆସିବା ଭିତରେ ଗଢ଼ି ଉଠିଥିଲା ଏକ ଭଲପାଇବାର ତାଜମହଲ । ଅତୁଲବାବୁ ଢେର୍ କଥା କହନ୍ତି, ତାଙ୍କ ସ୍ତ୍ରୀ ମଧ ଯୋଗ ଦିଅନ୍ତି । ପ୍ରାୟ ପ୍ରତ୍ୟହ ତାଙ୍କର ବୈଠକଘରଟି ସରଗରମ ହୋଇଉଠେ । ରାଣୀର ଦରଫୁଟା କଥା– ତାର ଗୁପେଲି ରାତିରେ ଜ୍ୟୋତ୍ସ୍ନାପରି ସ୍ନିଗ୍ଧ ସୁନ୍ଦର ମୁଖଶ୍ରୀ ମୋ ମନରେ କୁହୁକ ଲଗାଏ । ତାର ଅଙ୍ଗସୌଷ୍ଠବ ଭିତରେ ଲୁଚି ରହିଥାଏ ଯୁଗଯୁଗାନ୍ତରର ସ୍ୱପ୍ନ– କଳ୍ପନା । ପ୍ରତ୍ୟେକ ଅଙ୍ଗ ଚଳନାରେ ପରିସ୍ଫୁଟ ହୁଏ ପଦ୍ମ, ତାର ନିଷ୍ପ୍ରଭ ଭ୍ରୂ ତଳେ ଯେପରି ସମସ୍ତ ରୂପଶ୍ରୀ ଧରି ରଖିଛି କିଏ । ତାର ବୟସର ଚଞ୍ଚଳତା ତାକୁ ଯେପରି ଆହୁରି ସୁନ୍ଦର କରିଦେଇଛି । ସନ୍ଧ୍ୟା ହୋଇଆସେ । ରାସ୍ତାଟା ସରଗରମ ହୋଇଉଠେ । ରାଣୀ ପାଖକୁ ଆସି କହେ, "ଦାଦା ଘୂର୍‌ତେ ଯାବ ।" ତାର ଅଲିଅଳ କଥା ଭିତରେ ମୋ ମନ ହଜିଯାଏ । ତାକୁ ଧରି ବୁଲି ବାହାରେ । ପ୍ରତିଦିନର ଘଟନାବଳି ସେ ମୋତେ କହେ । ଯେଉଁଦିନ ନିର୍ଯାତନା ପାଇଥାଏ କଥାଟା କହିସାରି ମୋ ଆଡ଼କୁ ଅନାଏ ଯେପରି ସେ ମୋଠାରୁ ପରିସମାପ୍ତିଟାକୁ ଶୁଣିବାକୁ ଚାହେଁ । ମୁଁ ତାକୁ ଆଶ୍ୱାସନା ଦିଏ । ଅତୁଲବାବୁ ନିକଟରେ ତା' ଲାଗି ଓକିଲାତି କରିବି ବୋଲି ମଧ ଜଣାଏ । ସେ ହସେ । ତାର ସେଇ ଅସରନ୍ତି ହାସ୍ୟ ଭିତରେ ଲୁଚି ରହିଥାଏ ଯୁଗଯୁଗାନ୍ତରର କମନୀୟ ମଧୁରତା ।

ଭାରତର ଗଗନ ନିଷ୍ପ୍ରଭ ହୋଇ ଉଠିଛି କଳଙ୍କ– ବଉଦରେ ଆଚ୍ଛାଦିତ ହୋଇ । ଆକାଶର ଉଜ୍ଜ୍ୱଳ ତାରକା ମଳିନ ହୋଇ ଉଠିଛି । ଦେଶର ମହାତ୍ମାମାନଙ୍କର ଉପଦେଶ– ସାଧୁ ସାଧୁ ଶବ୍ଦ ପାଗଳର ପ୍ରଳାପ ବିବେଚିତ ହୋଇଛି । ସମଗ୍ର ପୃଥିବୀର ଶିକ୍ଷାଗୁରୁ ଏ ଭାରତ– ନିଜର ସଭ୍ୟତା– ଗୁରୁତ୍ୱ ଭୁଲିଯାଇ ରକ୍ତପିପାସୁ ହୋଇ ଉଠିଛି । ମଣିଷ ମଣିଷ ଭିତରେ ଯୁଦ୍ଧ ଲାଗିଛି । ଭାରତୀୟ ଭାରତୀୟ ବକ୍ଷରେ ଛୁରି ମାରିବାର ପ୍ରୟାସ କରିଛି । ଧନ୍ୟରେ ବିଶ୍ୱବନ୍ଦ୍ୟ ଭାରତ, ସହସ୍ର ସହସ୍ର ଋଷିମୁନିଙ୍କର ପୂଜିତ ଭାରତବର୍ଷ !

ସେପ୍ଟେମ୍ବର ୧୨ ତାରିଖ । କଲେଜଟା ବେଶି ଦୂର ନୁହେଁ । ଆମେ ଏଥିପୂର୍ବରୁ ଶୁଣିଛୁ ସହରରେ ଗଣ୍ଡଗୋଳ ଚାଲିଛି । କିନ୍ତୁ ସେଥିକୁ ଭୟ ନକରି କଲେଜ ଯାଉଥିଲୁ ।

ସେଦିନ କାହିଁକି ମୋତେ ଭାରି ଉଦାସ ଲାଗିଲା । ମନରେ ମୋର ଯେପରି ଏକ ତୀବ୍ର ପୀଡ଼ା ଆଘାତ ବ୍ୟାଘାତରେ ଛିନ୍ନବିଛିନ୍ନ କରିଦେଲା । କଲେଜ ଯିବା ଆଗରୁ ରାଣୀ ଆସି କହିଲା, ତାର ଉଦାସ କଣ୍ଠ । ସରଳ ସୁନ୍ଦର ଶିଶୁଟିର ଏ କାତର ମିନତି ଯେପରି ବିଚଳିତ କରିଦେଲା– "ଦାଦା ଆଜକେ ଯେଓନା, ଗୋଲମାଲ ହଚ୍ଛେ" । ତାର ଉଜ୍ଜ୍ୱଳ ନେତ୍ରପ୍ରାନ୍ତରୁ ଏକ ଦୁଃଖର ଭ୍ରୂକୁଟି ସୂଚିତ ହେଉଥିଲା । ତାହା ବଡ଼ ମର୍ମନ୍ତୁଦ– କରୁଣ । ଶେଷ ଭିକ୍ଷା ତା'ର ମାଗିବା ପାଇଁ ଆସିଛି ମୋ ନିକଟକୁ । ମୋର କଣ୍ଠ ମଧ ଆର୍ଦ୍ର ହୋଇ ଉଠିଲା । ତାକୁ ପ୍ରବୋଧ ଦେଇ ଫେରିଲି । କିଏ ଜାଣିଥିଲା ଏତେବଡ଼ ଭଲ ପାଇବାର ଅବସାନ ଏଡ଼େ ସହଜ– ଏତେ ନିକଟରେ । ଗଲାବେଳେ ବିଦାୟର– ଜୀବନର ଶେଷ ଆଶାର ଚୁମାଟିଏ ଦେଲି । ସେଇଠି ସେ ସରଳ ହୋଇ ଉଠିଲା– ସହଜ ହୋଇ ଉଠିଲା । ମୁଁ ଚାଲିଆସିଲି । କଲେଜରେ ଶୁଣିଲି ଗୋଳମାଳ ଲାଗିଯାଇଛି– ହରିସନ ରୋଡ଼ରେ ରକ୍ତର ସୁଅ ଛୁଟିଛି । କଲେଜ ଆକ୍ରମିତ ହେବା ଅବଶ୍ୟମ୍ଭାବୀ । Safeguard ପାଇଁ ମିଲିଟାରୀ ଚାଲି ଆସିଲେ, ମଣିଷ ଜାତିର ଗୌରବ ଆରମ୍ଭ ହେଲା । ଭାଇ ଭାଇର ରକ୍ତରେ ନିଜ ନିଜର ହସ୍ତ ରଞ୍ଜିତ କରି କଲେଜ ଗେଟରେ ଯେତେବେଳେ ରକ୍ତର ସ୍ରୋତ ଛୁଟିଲା ଆଖିରେ ମୋର ଦୀପ୍ତି ନଥିଲା । କାନରେ ମୋର ଆର୍ତ୍ତତାର ସ୍ପନ୍ଦନ ବାଜୁ ନଥିଲା । ମୁଁ ଖାଲି ଭାବୁଥାଏ ସେଇ ରାଣୀ କଥା । ତାର ସରଳ ସହଜ ମୁଖର ପ୍ରତିବିମ୍ବ ଫେରି ଫେରି ନାଚି ଉଠୁଥିଲା ଆଖିଆଗରେ । ତାର ଆର୍ତ୍ତତା ଯେପରି ସେହି ଜନଗହଳି ଭିତରୁ ଶୁଣିବାକୁ ପାଇଲି । ଦୁଇଥର ଯିବାକୁ ଚେଷ୍ଟା କଲି, କିନ୍ତୁ କେତେଗୁଡ଼ିଏ ପ୍ରତିବନ୍ଧକ ମୋର ପଥରେ ସ୍ତମ୍ଭରୂପେ ଠିଆହେଲା ।

ଗଗନ ପୂରି ଶବ୍ଦ ଉଠୁଛି 'ଆଲା ହୋ ଆକବର' 'ଜୟହିନ୍ଦ୍' ତା'ପରେ ରକ୍ତର ସ୍ରୋତ ବହିଚାଲିଛି । ମନୁଷ୍ୟ ସମାଜ ସଭ୍ୟତାର ଚରମ ବିକାଶରେ ଉପନୀତ । ମନେହେଲା ଏଇ ବୈଷ୍ଣବୀ ନୃତ୍ୟ ତାଳରେ ନାଚି ଉଠନ୍ତି, ଝଞ୍ଜା ଆଣନ୍ତି, ପ୍ରଳୟ କରନ୍ତି ।

ସେଦିନ ଗଲା– ତା' ଆରଦିନ ସନ୍ଧ୍ୟାରେ ବସାକୁ ବାହାରିଲି । ଆମେ ଠିକ୍ କଲୁ ପଳାଇଯିବା । ବସା ନିକଟରେ ମଟର ପହୁଞ୍ଚିଲା ପରେ ଓହ୍ଲାଇ ଆସି ଅତୁଲବାବୁଙ୍କ ଘରକୁ ଚାଲିଲି ।

ନୟନ ମୋର ନିସ୍ତେଜ ହୋଇଗଲା । ହୃଦୟର ପ୍ରତ୍ୟେକ ବନ୍ଧ ଯେପରି ବନ୍ଦ ହୋଇଥିଲା । ଅଙ୍ଗର ଶିରାପ୍ରଶିରା ତଳେ ଯେପରି କିଏ ସୁପ୍ତ ବାଣୀ ଶୁଣାଇ ଦେଲା । ଶିହରି ଉଠିଲି । ଆସନ୍ନପ୍ରସବା ରାଣୀର ମାତା ରକ୍ତସ୍ନାନ କରି ଶୋଇପଡ଼ିଛନ୍ତି ଚିରଦିନ ଲାଗି । ପିଣ୍ଡାଟା ରକ୍ତରେ ମଖା ହୋଇଛି । ନଗ୍ନ ମୂର୍ତ୍ତି– ଗର୍ଭରେ ତାର ଶିଶୁ । ମନେ୍ ହେଉଥିଲା ନିର୍ଯାତିତ ପତିତ ହୋଇଛନ୍ତି ସେ । ଦୁଆର ନିକଟରେ ପଡ଼ିଛି ରାଣୀ । ରାଣୀର ବୁକୁରେ ଏକ ତୀବ୍ର ଛୁରୀ । ନିକଟରେ ତାର ପିତା ଅତୁଲବାବୁ । ଭାବିପାରିଲିନି କ'ଣ ଦେଖୁଛି । ହାୟରେ ମନୁଷ୍ୟର ସଭ୍ୟତା– ସୁକୁମାର ଶିଶୁ, ଆସନ୍ନପ୍ରସବା ନାରୀ ବକ୍ଷରେ ଛୁରୀ ମାରିବା କ'ଣ ସେଇ ଆଦିମ କାଳରୁ ସ୍ତରେ ସ୍ତରେ ଶିକ୍ଷା ହୋଇଆସିଛି ? ରାଣୀ! ଅସ୍ପଷ୍ଟ ବେଦନାରେ କଣ୍ଠ ମୋର ଆର୍ଦ୍ର ହୋଇଉଠିଲା । ଡାକିଲି, ହେ ରୁଦ୍ର ! ହେ ଶିବ ! ରକ୍ଷାକର ! ହେ ବ୍ରହ୍ମା, ହେ ସ୍ରଷ୍ଟା, ଆସ, ପ୍ରଳୟ କର । ହେ ମହାଦେବ, ତୁମର ସେହି ଭୈରବ ଡମ୍ବରୁ ବଜାଅ– ପ୍ରଳୟ କର– ଝଞ୍ଜା ସୃଷ୍ଟି କର । ଏ ମଣିଷ ସମାଜକୁ ନିର୍ବାଣ କରିଦିଅ । ସୁଶିଲ୍ ଡାକିଲା 'ଚାଲିଆ–ବିପଦ !' ବୁକୁ ଭିତରୁ ଏକ ଅଗ୍ନି ପ୍ରଜ୍ୱଳିତ ହେଲା । ଭାବିଲି, ନା ନା, ଏ ପଶୁଠାରୁ ହୀନ ସମାଜକୁ ଗ୍ରହଣ କରିପାରେନା– ସୁଶିଲ୍ ମୋତେ ଜୋରକରି ଟାଣିନେଲା । ଶେଷଥର ପାଇଁ ରାଣୀକୁ ଚୁମ୍ବନ କଲି । ଡାକିଲି, ରାଣୀ ! ଯେପରି ସେ ଉତ୍ତର ଦେଲା– ଦାଦା !



# ଅନ୍ଧ

ମୁଁ ଯେଉଁ ସମୟରେ ଗଳ୍ପଲେଖା ଆରମ୍ଭ କରୁଥିଲି, ହଠାତ୍ ଗଳ୍ପ ଲେଖାର ଖିଆଲ୍‌ରେ ଏବଂ ଗୋଟିଏ ବୈଜ୍ଞାନିକର ପ୍ରତ୍ୟେକଟି ବସ୍ତୁ ଯାଞ୍ଚ୍ କରିବା ପାଇଁ ମୋର ରିସର୍ଚ୍ଚ ଅଧ୍ୟାପକ ବୃଦ୍ଧ ଗାଡ଼ଗିଲ୍‌ଙ୍କ ଘରେ ପହଞ୍ଚିଲି । ଚିରକୁମାର ଗାଡ଼ଗିଲ୍‌ଙ୍କ ଘରେ କିଛି ସମୟ ଅପେକ୍ଷା କରିବାକୁ ପଡ଼େ ସତ, କିନ୍ତୁ ଚ' କପ୍‌ଟିଏ ମିଳେ । କେହି କେହି ଚ'କପ୍‌ଟିଏ ଖାଇ ବାହାରି ଆସନ୍ତି । ଉଦ୍ଦେଶ୍ୟ ହୁଏତ ନଥାଏ ଯେ ଗାଡ଼ଗିଲ୍‌ଙ୍କ ସହିତ ଦେଖାହେଉ । ଏଥିପାଇଁ ଗାଡ଼ଗିଲଙ୍କ ଆୟା ରୋଜା କେବେ ମନଦୁଃଖ କରିବାର ଦେଖାଯାଇନାହିଁ; ସେ ଥରକୁଥର କରି ଅନ୍ତତଃ ଦିନକୁ ଗାଡ଼ଗିଲ୍‌ଙ୍କ ଶହେ ବନ୍ଧୁଙ୍କୁ ଶହେ କପ୍ ଚ ଦେଇପାରେ ।

ଅପେକ୍ଷା କରିବାର ଦୁର୍ବଳତାକୁ ଯଦି ଅତିକ୍ରମ କରିହୁଏ, ତେବେ କେତୋଟି ପାଉଁରୁଟି ସ୍ଲାଇସ୍ ଓ ବଟର୍ ଏବଂ ଗୋଟିଏ ପୋଚ୍ ନିଶ୍ଚୟ । ମିଷ୍ଟର ଗାଡ଼ଗିଲଙ୍କର ବହୁ ଛାତ୍ର ଏଥିପାଇଁ ପ୍ରଶଂସା କରିଥାନ୍ତି । ବିଶେଷତଃ ଯେଉଁମାନଙ୍କର ଅର୍ଥ ମାସର ଆୟରୁ କପେ ଚ ମଧ୍ୟ ଯୋଗାଇପାରେ ନାହିଁ ସେ ଅନ୍ତତଃ ଗୋଟିଏ ଦିନରେ କପେ ଚ ଯେ ମିଷ୍ଟର ଗାଡ଼ଗିଲ୍‌ଙ୍କ ଘରୁ ପାଇପାରିବ ସେ ବିଷୟରେ ନିଶ୍ଚିତ ଥାଏ ।

ମୁଁ ଅପେକ୍ଷା କଲି । ଅବଶ୍ୟ ପୋଚ୍, ବଟର୍ ଓ ପାଉଁରୁଟିର ଲୋଭ ମୋଟେ ନଥିଲା ବୋଲି କହିପାରିବିନି ।

ରାତି ଦଶ ବାଜିଲା । ମୁଁ ଅସ୍ଥିର ହୋଇ ଉଠୁଥାଏ । ଆଙ୍ଗ୍ଲୋଇଣ୍ଡିଆନ୍ ଆୟା ମିସ୍ ରୋଜା ଘରକରଣା ଏବଂ ମିଷ୍ଟର ଗାଡ଼ଗିଲ୍‌ଙ୍କର ଦିନକର କାର୍ଯ୍ୟ ବିବରଣୀ ମଧ୍ୟ ଦେଲେ । ମୋର ଏକାଜିଦ୍ ଦେଖା କରିବି । ଆଉ ତାଙ୍କ ଲେବୋରେଟରିରେ ଦେଖା ହିଁ ହେବ । ରାତି ବାର ହେଲା । ମୁଁ ବ୍ୟସ୍ତ ହେଲି । ଶେଷରେ ମିସ୍ ରୋଜା ମୋତେ ଗାଡ଼ଗିଲ୍‌ଙ୍କ ରିସର୍ଚ୍ଚ ରୁମ୍‌କୁ ନେଇଗଲେ । ଗାଡ଼ଗିଲ୍ ଧ୍ୟାନରେ । ଏକ ମନରେ କ'ଣ ଭାବି ଚାଲିଛନ୍ତି । ହାତରେ ଗୋଟାଏ ଟିଉବ୍ ଆଉ ସେଇ ଟିଉବ୍‌କୁ ଲାଇଟ୍ ପାଖରେ ଧରି ଏପଟ ସେପଟ କରୁଛନ୍ତି ।

ମୁଁ ଡାକିଲି– ସାର୍ ସାର୍– ସାର୍ !

ନିଦ ଭାଙ୍ଗିଲା ତାଙ୍କର । ଯେପରି ସ୍ୱପ୍ନରେ ବିଳବିଳାଇ ହୁଅନ୍ତି– ହ୍ୱାଟ୍ ହ୍ୱାଟ୍, ଓ ୟେସ୍– ସେ ବଡ଼ ବିମର୍ଷ ହୋଇ କହିଲେ ।

"ତୁମେ ଆଶ୍ଚର୍ଯ୍ୟ ହେବ ପଟ୍ଟନାୟକ, ଏହି ଅନ୍ଧ ଛୋଟ ସେଲ୍‌ଗୁଡ଼ିକର ଅଦ୍ଭୁତ କ୍ଷମତା ଅଛି । ତମେ ଏହାକୁ ଅନ୍ଧ କହୁଛ ସତ, କିନ୍ତୁ ପ୍ରଜନନ ଶକ୍ତି ଏବଂ ଅନ୍ୟାନ୍ୟ ଶକ୍ତି କେତେ ବେଶି ?"

ମୁଁ କିଛି କହିପାରିଲି ନାହିଁ ।

ସେ କହିଲେ– "ମୁଁ ବର୍ତ୍ତମାନ ଚିନ୍ତାରେ ଅଛି । ଏ ପୃଥିବୀରେ ସବୁଠାରୁ ବଡ଼ ଅନ୍ଧ କିଏ ?"

ମୁଁ କହିଲି– "ଏ ତ ମାମୁଲି କଥା ସାର୍ ! ଯାହାର ଆଖି ନାହିଁ ।"

ସେ ହସିଲେ– "ତମ ପରି ମୋର ମଧ ଧାରଣା ଥିଲା ପଟ୍ଟନାୟକ । ମୁଁ ସେ ଭାବରେ ଅନ୍ଧକଥା କହୁନାହିଁ । ତମେ ଯାହାକୁ ଅନ୍ଧ କହୁଛ ସେ ଦେଖିପାରେ ନାହିଁ ସତ, କିନ୍ତୁ ସେ ଚମତ୍କାର ଜ୍ଞାନ ଅର୍ଜନ କରିପାରେ । ତାର ମନ ଯେକୌଣସି ଦୃଷ୍ଟିବାନ ଲୋକଠାରୁ ଯଥେଷ୍ଟ ବେଶି । ମୁଁ ଜାଣେ, ମୋର ବୁଢ଼ୀମା ଅନ୍ଧୁଣୀ ଥିଲେ । ହେଲେ, ତାଙ୍କର ଜ୍ଞାନର ପ୍ରଖରତା ଓ ବାଗ୍ମିତା ଥିଲା । ତମେ ଆଶ୍ଚର୍ଯ୍ୟ ହେବ– ମୁଁ ବର୍ତ୍ତମାନ ଜାଣିବାକୁ ଚାହେଁ, ଏ ପୃଥିବୀରେ ସବୁଠାରୁ ବଡ଼ ଅନ୍ଧ କିଏ ?"

ମୁଁ କହିଲି– "ମୂର୍ଖ– ଯେ ପାଠ ପଢ଼ିନି ।"

ସେ କହିଲେ– "ମୂର୍ଖ ଯାହାକୁ କହୁଛ, ତା'ଠାରେ ସରଳତା ଅଛି ତ ? ପାଠ ପଢ଼ି ଜାଣେନି ବୋଲି ତୁମେ ତାକୁ ଠକିଦେଇପାର, ଏଇୟା କ'ଣ କହୁଚ ? ତେଣୁ ସେ ବୋକା । ତମପରି ବାପାଙ୍କ ପକେଟରୁ ପଇସା ଚୋରି କରି ସାନଭାଇ ନାଁରେ ଦେଇ ସେ ସିନେମା ବା ସିଗାରେଟ୍ ଟାଣେ ନାହିଁ– ନୁହେଁ ?"

"ବାସ୍ତବିକ ଚିନ୍ତା କରିବାର କଥା– ଅନ୍ଧ କିଏ ? ଆଖି ଥାଇ ଅନ୍ଧ, ଏପରି ବା କିଏ ଅଛି ? ମୁଁ ଶୁଣିଥିଲି, ନାଗା ସନ୍ନ୍ୟାସୀମାନେ ଏପରି ଇନ୍ଦ୍ରଜାଲ କରିଦିଅନ୍ତି ଯେ ଆଖି ଥାଉଁ ଥାଉଁ ଅନ୍ଧ ହେଇଯାଏ ମଣିଷ । ଅନ୍ଧ ବୋଇଲେ ଯଦି ସେଇଟା ବୁଝାଉଥିବ !"

ମୁଁ ଫେର୍ ଚିନ୍ତାରେ ପଡ଼ିଲି । ବାସ୍ତବିକ ବଡ଼ ଚିନ୍ତାଟାଏ । ଅନ୍ଧ– ପୃଥିବୀରେ ବଡ଼ ଅନ୍ଧ ବା କିଏ ? ସମସ୍ୟାରେ ମୁଁ ଅସ୍ଥିର ହୋଇ ଫେରି ଅଇଲି । ଆସି ଶୋଇ ପଡ଼ିଲି । ସଞ୍ଜବେଳକୁ ପୁଣି ଗଲି । ଚମକି ପଡ଼ିଲି– ଗେଟ୍‌ରେ ଗୋଟାଏ ବିରାଟ ଆଲିଗଡ଼ ତାଲା । ମାଳୀ କହିଲା– "ସେ ଆଜି ବାହାରିଗଲେ । କେବେ ଆସିବେ ଜଣା ନାହିଁ ।" ଏ ଭିତରେ ବହୁତ ଦିନ ବିତିଗଲା । କେବଳ କେବେ କେବେ ଚିଠି ଆସେ ଅଫିସ୍‌କୁ– ମୁଁ ଏବେ ସୁଇଜରଲାଣ୍ଡରେ, କେବେ ଥାଇଲାଣ୍ଡରେ, କେବେ ନିୟୁୟର୍କରେ– କେବେ ବର୍ମିଂହାମ୍‌ରେ ତ କେବେ ବର୍ଲିନରେ ।

ଯାହାହେଉ ସେ ଦିନ ସମ୍ବାଦଟା ପଢ଼ିବାକୁ ମୋର ଧୈର୍ଯ୍ୟ ନଥିଲା । ଆଫ୍ରିକାରୁ ଆସିଥିବା ଏକ ସମ୍ବାଦ । ଭାରତରୁ ଆଗତ ଏକ ପର୍ଯ୍ୟଟନକାରୀ ରିସର୍ଚ୍ଚ ବୈଜ୍ଞାନିକ ମିଷ୍ଟର ଗାଡ଼ଗିଲ ଆତ୍ମହତ୍ୟା କରିଛନ୍ତି । ଏହାପରେ ତାର ଆସିଲା– ଗାଡ଼ଗିଲ ଆତ୍ମହତ୍ୟା କରିଛନ୍ତି ଆଫ୍ରିକାରେ ।

ଏତେ ବଡ଼ ବଡ଼ ସହର ବନ୍ଦର ଥାଉଁ ଥାଉଁ ସେ ତାଙ୍କର ସତୁରି ବର୍ଷରେ ଆଫ୍ରିକାର ଏକ ଜଙ୍ଗଲରେ ଆତ୍ମହତ୍ୟା କଲେ କାହିଁକି ?

ମୁଁ ଆଶ୍ଚର୍ଯ୍ୟ ହେଲି ।

ପ୍ରାୟ ଦୁଇମାସ ପରେ ରୋଜା ଆସିଲା । ମୁଁ ଦିନେ ସଞ୍ଜବେଳେ ରୋଜା ପାଖକୁ ଯାଇ ଡାକିଲି । ରୋଜା ଆଗରେ ଆସି ବସିଲା । ସେ ଯିବା ଆଗରୁ ରୋଜା ନାମରେ ସମସ୍ତ ସମ୍ପତ୍ତି କରିଦେଇଯାଇଛନ୍ତି । କିପରି ଓ କେମିତି କଲେ ପ୍ରଶ୍ନରେ ରୋଜା ଘର ଭିତରକୁ ପଶି ଯାଇ ଗୋଟିଏ ଡାଏରି ଆଣିଲା । ଆରମ୍ଭ କଲା–

"ତୁମେ ହୁଏତ ଜାଣ ମୁଁ ପ୍ରଫେସର ଗାଡ଼ଗିଲଙ୍କ ପଛରେ ଏକ ଛାୟା ପରି ସବୁବେଳେ କିପରି ଗୋଡ଼ାଇଥିଲି, ଆଉ ମୁଁ କିପରି ତାଙ୍କୁ ଭଲପାଇ ବସିଥିଲି, ମୋର ଏଇ ତେଇଶିତମ ବସନ୍ତରେ । ତାଙ୍କର ଏଠାରୁ ଯିବାର ଗୋଟିଏ ଉଦ୍ଦେଶ୍ୟ– ଏ ପୃଥିବୀରେ ଶ୍ରେଷ୍ଠ ଅନ୍ଧ କିଏ ? କିଏ ସେ ? ଏହି ଚିନ୍ତାରେ ସେ ପାଗଳ ହେବାକୁ ଲାଗିଲେ । ଆମେ ଦେଶ ପରେ ଦେଶ ବୁଲିଲୁ । ସେ ପୃଥିବୀର ଶ୍ରେଷ୍ଠ ଡାକ୍ତର, ଶ୍ରେଷ୍ଠ ବିଶେଷଜ୍ଞମାନଙ୍କ ସଙ୍ଗରେ ବିଚାର କରୁଥିଲେ । ସେ କିନ୍ତୁ ସବୁଠୁ ଫେରିଆସି କହୁଥିଲେ– "ରୋଜା, ମୁଁ ପରାସ୍ତ ହେଲି ।"

"ପ୍ରତ୍ୟେକ ମୁହୂର୍ତ୍ତରେ ମୁଁ ଆଶା ଓ ଉତ୍ସାହ ଦେଉଥାଏ ଏବଂ କହୁଥାଏ– ମୁଁ ଜାଣେ କେବଳ ଆପଣ ସେ ସତ୍ୟ ଆବିଷ୍କାର କରି ଚିର ଅବିସ୍ମରଣୀୟ ହୋଇ ରହିବେ । ସେ ଦିନରାତି ବହି ପଢ଼ିବାକୁ ଆରମ୍ଭ କଲେ, ପ୍ରତ୍ୟେକ ଆଖିକୁ ପରୀକ୍ଷା କଲେ । ସେ ପ୍ରତ୍ୟେକ ସେକେଣ୍ଡରେ ବ୍ୟସ୍ତ ହୋଇପଡୁଥିଲେ । ଆମେ ଆଫ୍ରିକାର ଭାଲପାରାଇସୋରେ ଶୀତର ଆରମ୍ଭରେ ପହୁଞ୍ଚିଲୁ । ଅତି ଚମତ୍କାର ସ୍ଥାନ । ପାହାଡ଼ମାଳା । ସେଥିରେ ପୁଣି କୁଞ୍ଜ । ବର୍ଷା ପରେ ଶୀତ ମଧ୍ୟ ମନୋରମ । ଆମେ ଯେତେବେଳେ ଯାଇଥିଲୁ ସେତେବେଳେ ଗୋଟିଏ ଭଲ ୟୁରୋପିଏନ୍ ହୋଟେଲ୍ ନ ପାଇ ଏକ ପାହାଡ଼ ଉପରେ ଗୋଟିଏ ନିଗ୍ରୋ ହୋଟେଲରେ ରହିଲୁ ।

ମୁଁ ସେଦିନ ସର୍ଦ୍ଦିରେ ଏବଂ ଟିକିଏ ଜରର ଉଷ୍ଣତାରେ ମିଷ୍ଟର ଗାଡ଼ଗିଲଙ୍କ ସହିତ ପାହାଡ଼ ଚଢ଼ିବାରେ ଯୋଗ ଦେଇପାରି ନଥିଲି । ମୋତେ ସେ ମନା କଲେ । ହୋଟେଲ ମାଲିକର ଝିଅ ରୀନା ଆସିଥିଲା । ମୁଁ ତାଙ୍କ ସାଙ୍ଗରେ ଯିବାକୁ ଅନୁରୋଧ କରିଥିଲି । ମୁଁ କ'ଣ ଜାଣିଥିଲି ଯେ ସେ ରାକ୍ଷସୀଟା ଏଇୟା କରିବ !

ରୋଜା ସକ ସକ ହୋଇ ଉଠିଲା, ଗଳା ତାର ଆର୍ଦ୍ର ହୋଇ ଉଠୁଥାଏ ।

କହିଲି– "ରୀନା କ'ଣ ସୁନ୍ଦରୀ ଥିଲା ?"

ରୋଜା ବିଦ୍ରୂପ କରି କହିଲା– "ହଁ, କୋଇଲାଠାରୁ କଳା ଆଉ ଗଧପରି କଣ୍ଠ । ଦେଖିବାକୁ ଯାହାକୁ କହନ୍ତି ସୂର୍ପଣଖା ! ତା' ମୁହଁକୁ ଚାହିଁଲେ, ତା' ବାପା କହୁଥିଲେ, ହୋଟେଲରେ ମୋଟେ ବିକ୍ରି ହୁଏ ନାହିଁ । ଆଉ ସାଇପଡ଼ିଶା କହନ୍ତି, ତୁ ମୁହଁ ଦେଖାଇବୁ ନାହିଁ ।"

"ରୀନା ଗଲା ତାଙ୍କ ସାଙ୍ଗରେ, ମୁଁ ମୋର ଘରେ ଶୋଇପଡ଼ିଥାଏ, ସକାଳୁ ହୋଟେଲ ଚାକର ଚିତ୍କାର କରି କହି ଉଠିଲା– 'ସାହେବ ମରିଯାଇଛି' । ମୁଁ ଧାଇଁଗଲି । ଗୋଟାଏ ଆରାମ ଚେୟାର ଉପରେ ସେ ଶୋଇପଡ଼ିଛନ୍ତି ଏବଂ ଗୋଟାଏ ଚିଠି– ମୋ ପାଖକୁ ।"

ଡାଏରି ଭିତରୁ ରୋଜା ଖୋଲିଲା– 'ସ୍ନେହର ରୋଜା, ଆଜି ମୁଁ ବହୁ ଦୂରକୁ ଚାଲିଯାଉଛି, ଯେଉଁଠାରୁ କେହି ଫେରି ଆସନ୍ତି ନାହିଁ । ତେବେ ମୋର କାମ ସରିଯାଇଛି ।

ମୁଁ ଜାଣିପାରିଛି, ପୃଥିବୀରେ ଶ୍ରେଷ୍ଠ ଅନ୍ଧ କିଏ । କିଏ ସେ ଶ୍ରେଷ୍ଠ ଅନ୍ଧ ? ଯାହାର ଲଙ୍ଘନ ନାହିଁ– ଯାହାର ଅତିକ୍ରମ ନାହିଁ, ଚିରଦିନ ବଳଶାଳୀ– ଚିରଦିନ ଚଞ୍ଚଳ– ମୋର ଡାଏରିରୁ ପାଇବୁ ।'

ଡାଏରି ପଢ଼ିଲା ରୋଜା– 'ମୁଁ ରୀନାକୁ ନେଇ ପର୍ବତ ଉପରକୁ ଉଠିଲି । ତା' ଗୋଡ଼ ଖସିଗଲା । ପାଟିକଲା, ମୁଁ ତାକୁ ଧରି ଆଣିଲି । ତା'ର ହାତ ଆଞ୍ଚୁଡ଼ି ହୋଇଯାଇଥିଲା । ତାକୁ ରୁମାଲରେ ବାନ୍ଧିଦେଲି । ଓଠ ପାଖ ଛିଣ୍ଡି ଯାଇଥିଲା । ଚିବୁକରେ ହାତ ଦେଇ ଚମକି ପଡ଼ିଲି । କାଇଁ, ରୋଜାଠାରେ ଏମିତି ଚମକ ଦେଖିନାହିଁ କେବେ । ମୁଁ ପୁଣି ବସିଲି । ଗୁପ୍ତରେ ହାତଟିକୁ ଦେଖିଲି । ତା' ଗାଲରେ ହାତ ଦେଲି । ରୀନା ଠିଆ ହୋଇଥାଏ । ସେ ହସୁଥାଏ । ତା'ର ଓଠରେ ହାତ ଦେଲି । ମୋତେ ଆହୁରି ମଧୁର କରିଦେଲା । ପ୍ରଥମ ଥର ପାଇଁ ମୁଁ ତା' ଗାଲରେ ଚୁମା ଦେଲି । ସତୁରି ବରଷ ଭିତରେ ମୁଁ କାହାରି ଚିନ୍ତା କରିନାହିଁ । ଆଜି ବୁଝିଲି, ମୁଁ ଅନ୍ଧ ହୋଇଯାଇଛି । ଶେଷରେ ନିଷ୍ପତ୍ତିରେ ଆସିଲି, ଏ ପୃଥିବୀରେ ବଡ଼ ଅନ୍ଧ ଏଇ ପ୍ରେମିକ ଶ୍ରେଣୀ, ଯେଉଁମାନେ ନିଜର ସମସ୍ତ ବିଘର ହରେଇ ବସିଥାନ୍ତି ।'



# ଶିଳ୍ପୀ ଓ ପ୍ରତିମା

ଶିଳ୍ପୀ ଅଙ୍କନ କରି ଚାଲିଛି ଶିଳା ଉପରେ ତାର କବିତାକୁ ସବୁଜ କରି–

ଈଷଦୁତ୍ତୋଳିତ ଚରଣ ପଦ୍ମର ଅଙ୍ଗୁଳିଗୁଡ଼ିକ ପ୍ରତି ପଦକ୍ଷେପରେ ଏ କଠିନ ଭୂପୃଷ୍ଠ ଉପରେ ନିହିତ ହେବା ସମୟରେ ଜ୍ୟୋତିର୍ମୟ ନଖରୁ ଅତି ଉଜ୍ଜ୍ୱଳ କିପରି ଏକ ରକ୍ତିମ ଆଭା ବିଚ୍ଛୁରିତ ହେଉଛି– ମନେ ହେଉଛି ଯେପରି ଅଙ୍ଗୁଠି-ନଖ ପ୍ରଭା ଭୂତଳରେ ସ୍ଥଳ ପଦ୍ମରାଶି ଫୁଟାଇ ଫୁଟାଇ ଚାଲୁଛି । ନୂପୁର ଅଛି ପଦରେ– ଝୁମୁ ଝୁମୁ ଶବଦ ସୃଷ୍ଟି କରି ଚାଲିଯାଉଥିବାବେଳେ ଯେପରି ତା'ର ନିକ୍ୱଣର ପ୍ରତିଦାନ ରୂପେ ପାଇବା ଲାଗି ରାଜହଂସୀମାନେ ମନ୍ଦ-ମନୋହର ଅଳସ ଗମନ ଶିକ୍ଷା ଦେଇଛନ୍ତି, ସୁବର୍ତ୍ତୁଳ, କ୍ରମଶଃ କୃଶ ଭାବାପନ୍ନ ଓ ଅନତି ଦୀର୍ଘ ଜଘନଦ୍ୱୟରେ ଅତି ଭାବପ୍ରେରଣା ଜୀବର ସୌନ୍ଦର୍ଯ୍ୟ ଜମାଟ ବାନ୍ଧିଯାଇଛି ସେଠି । ବୟସର ବସନ୍ତରେ ଉଚ୍ଚ କୁଚ ଯୁଗଳ ଉନ୍ନତ ହୋଇ ଉଠିଛି । ପୀନୋନ୍ନତ ସ୍ତନଦ୍ୱୟର ଭାରାରେ ଯେପରି ଆଗକୁ ଝୁଙ୍କି ପଡ଼ିଛି । ନିମ୍ନନାଭି ତାର କଟି ଦେଶର ସମ୍ମୁଖରେ ନବୋଦ୍‌ଗତ ଅତି ସୂକ୍ଷ୍ମ ରୋମବଳୀ ତାହାର ନାଭି ଗର୍ତ୍ତ ମଧ୍ୟରେ ଅଳ୍ପ ପ୍ରବେଶ କରି ଏପରି ଶୋଭାପାଉଛି ଯେ ମନେହୁଏ ସତେ ତାହାର ମେଖଳାର ମଧ୍ୟଗତ ନୀଳକାନ୍ତ ମଣିର ସ୍ନିଗ୍ଧୋଜ୍ଜ୍ୱଳ ଆଭା ନାଭିର ଉପରିସ୍ଥିତ ବସନଗ୍ରନ୍ଥି ଭେଦକରି ସେହି ନାଭି ଗହ୍ୱରରେ ପ୍ରବେଶ କରିଛି । ସିଂହକଟୀ-ତନୁମଧ୍ୟା ସେ କଟିଦେଶର ତଳେ ସୁନ୍ଦର ତ୍ରିବଳୀ । ଉଚ୍ଚ ସ୍ତନଦ୍ୱୟ ପରିବୃଦ୍ଧ ହୋଇ କଞ୍ଚନାଶୈଳୀର ଚାତୁରୀ ସୁସ୍ପଷ୍ଟ । ବାହୁଦ୍ୱୟ ଶିରୀଷ କୁସୁମ ଅପେକ୍ଷା ଆହୁରି କୋମଳ । ପକ୍ୱବିମ୍ବାଧରୋଷ୍ଠରେ ହସ ଯେତେବେଳେ ବିକଶି ଉଠିଛି ହସର ଶ୍ୱେତ ଆଭା ଲୋହିତ ଅଧର ଉପରେ ପଡ଼ି ସମସ୍ତ ମୁଖଟିକୁ ଆଲୋକିତ କରି ଦେଉଛି । ପ୍ରଭୂତ ସମୀରଣରେ ଏକାନ୍ତ ଚଞ୍ଚଳ ନୀଳୋତ୍ପଳ ପରି ସେହି ଅଧୀର ଚାହାଣି ମୁଖଠାରୁ ଆହୁରି ହୋଇ ଉଠିଛି ସୁନ୍ଦର କାନ୍ତ । ଅଞ୍ଜନ ଶଳାକା ଦ୍ୱାରା ଅଙ୍କିତ ତାର ଆକର୍ଣ୍ଣ ଦୀର୍ଘ କୁଞ୍ଚିତ ଭୂଲତାର ବିନ୍ୟାସ-ମଧୁର ଓ ଚାଞ୍ଚଲ୍ୟ ମସୀ ପାଗଳ କରିଦେଇଛି ଦର୍ଶକକୁ । ତରଙ୍ଗାୟିତ କେଶ କଳାପ ଚମରୀ ମୃଗର ପୁଚ୍ଛ ରୋମରାଜିଠାରୁ ଅତୀବ ସୁନ୍ଦର ଓ କାନ୍ତ । ପରିଧାନ କରିଛି ଶିଳ୍ପୀର କବିତା ଆରକ୍ତ ବକଳ ବସନ । ମୂର୍ତ୍ତିର ଅରୁଣ ଅଶୋକ ପୁଷ୍ପ ପଦ୍ମରାଗ ମଣିକୁ ପରାସ୍ତ କରିଛି । କର୍ଣ୍ଣିକାର-କୁସୁମ ସୁବର୍ଣ୍ଣ ପରି ଶୋଭାପାଉଛି ଏବଂ ଅମଳ ଧବଳ ସିନ୍ଧୁବାର-ପୁଷ୍ପର ହାର ମୁକ୍ତାମାଳାର ସ୍ଥାନ ପୂରଣ କରିଛି ଅଙ୍ଗରେ । ବକୁଳ

ମାଳାକୁ ସେ ଚନ୍ଦ୍ରହାର କରି ପିନ୍ଧାଇ ଥିଲା । ସୁନ୍ଦରୀର ସ୍ତନରୁ ତାହା ଖସି ପଡୁଥିବାବେଳେ ସୁକୁମାରୀ ଲଜ୍ଜାଶିଳା ହୋଇଉଠିଛି । ତାର ବ୍ରୀଡ଼ା ଦର୍ଶକର ନୟନରେ ଆଣିଛି ଅନୁଭାବନାର ମାଦକତା– ଶିଳ୍ପୀର ତୂଳିର ବେଗ ସେଇଠି ଶେଷ ହୋଇଯାଇଛି, ଶିଳ୍ପୀର ଅଙ୍କନ ଶେଷ ହୋଇଛି, ଶିଳ୍ପୀ ଜାଣିପାରିନାହିଁ ଏହି ଖଣ୍ଡଗିରି ଭିତରେ ସେ କଟାଇ ଦେଇଛି ଦୀର୍ଘ ପନ୍ଦର ବରଷ– ଖାଇବା ପିଇବା ଭୁଲି– ସମାଜ ସ୍ୱଜନ ଛାଡ଼ି– ଖଣ୍ଡଗିରିର ଏକ ନିର୍ଜନ ବନଲତା କୁଞ୍ଜ ଭିତରେ ଆତ୍ମହରା ହୋଇ ମୂର୍ତ୍ତି ଗଢୁଛି– ମୂର୍ତ୍ତି ।

ସେଦିନ ଶ୍ରାବଣ ପୂର୍ଣ୍ଣିମା– ଶିଳ୍ପୀ ଭାବୁଛି ତା'ର ଅଙ୍କନରେ ଭୁଲ କିଛି ରହିଯାଇନି ତ– ସେ ଆହୁରି ଭାବୁଛି– ତାର ଅଯତ୍ନ କେଶରାଶି ତାର ମୁଖମଣ୍ଡଳକୁ ଆବୃତ କରୁଛି । ସେ ଭାବୁଛି ତାର ସୃଜନ ସେଇଟା ।

ଶିଳ୍ପୀ ବିନୋଦ ସହିତ ହଠାତ୍ ଷୋହଳ ବର୍ଷ ପରେ ଦେଖା ।

"ଆରେ ବିନୋଦ– କେଉଁଆଡ଼େ ଯାଇଥିଲୁ ଏ ଭିତରେ ?"

ବିନୋଦ ବ୍ୟସ୍ତ ଥିଲା, "ଭାଇ ମୁଁ ବଡ଼ ବ୍ୟସ୍ତ– ମୋର କାଲି ବିବାହ– ମୁଁ କ'ଣ କରେ ଏକା, କହିଲୁ ?"

ବିନୋଦକୁ ଚାଳିଶ ବର୍ଷ ହେଲାଣି– ଶୁଣିଥିଲି ତା'ର ପ୍ରତିମା ସହିତ ଭଲପାଇବା ଜମି ଉଠିଥିଲା କିନ୍ତୁ ପ୍ରତିମାର ପିତା ଗୋଟାଏ ଚିତ୍ରକର ହାତରେ ସମର୍ପି ଦେବାଟା ପସନ୍ଦ ନକରି ସେ ଜଣେ ଅନ୍ୟ କାହାକୁ ବିବାହ ଦେଲେ । ଝିଅଟି ବେଶ୍ ଘରଦ୍ୱାର କରି ରହିଛି ।

ପଚାରିଲି– "କାହାକୁ ବାହାହେବୁ– କେଉଁଠି ଠିକ୍ ହୋଇଛି ।"

ବିନୋଦ ହସିଲା– "ପ୍ରତିମାକୁ, ପ୍ରତିମା ।"

କହିଲି, "ଆରେ ପ୍ରତିମା ତ ଘର କଲାଣି– ଆଉ ତୁ..."

ବିନୋଦର ଭାବ ଦେଖି ଆମେ ତାକୁ କହୁଥିଲୁ "ପାଗଳ" ବୋଲି ।

ବିନୋଦ ହସିଲା ପୁଣି, "ପ୍ରତିମା– ମୋର ହୃଦୟର ପ୍ରତିମାକୁ ନେଇ କେହି ଘର କରିପାରିବେ ନାହିଁ– ସେ ମୋରି ଭିତରେ– ମୋରି ଭିତରେ– ହେଉ, ଭାଇ ମୋର ବଡ଼ କାମ, ବଡ଼ ବ୍ୟସ୍ତ । ତୋତେ ନିମନ୍ତ୍ରଣ– ନିମନ୍ତ୍ରଣ– ଯିବୁ–" ବିନୋଦ ଚାଲିଗଲା । ବିନୋଦର ବେଦନା-ଚିନ୍ତା ଅନୁଭାବନା ଏହିପରି ସଦାସର୍ବଦା କ୍ଷିପ୍ର । ସେ ଶିଳ୍ପୀ– ଚିତ୍ର ଆଙ୍କେ– ସେ ବାସ୍ତବ ଦୁନିଆ ସହିତ ସମ୍ପର୍କ ତୁଟାଇ ଦେଇଛି । ପେଟର

ଭୋକକୁ ବରଦାସ୍ତ କରିପାରିଛି ନିଜେ, ନିଜର ବେଦନାକୁ ସେ ବେଦନା ବୋଲି ନେଇପାରିନି– ସେ ବରିନେଇଛି ନିଜ ମଥାରେ ସମସ୍ତ । ସେ ଘର କରିନି– ଘର କରିବାର ସ୍ପୃହା ନାହିଁ । ସେ ଖଣ୍ଡଗିରିର ଗୁହାରେ ଗୁହାରେ ଘୂରେ– କଣ ଚିତ୍ର ଆଙ୍କି ବସେ– ଶିଳ୍ପୀ– ଦେବତାକୁ ସମ୍ମାନ ଦିଏ । ପ୍ରତିମାକୁ ନେଇ ଘର କରିବାକୁ ବସିଥିଲା ବିନୋଦ, ପାରିନି– ହୁଏତ ଆଉ କାହାକୁ ନେଇ ସେ ଘର କରିବ– ଭଲକଥା ।

ଭଦ୍ରଲୋକ ମାନେ ଖାଇସାରି ଚାଲିଗଲେଣି, ସମସ୍ତଙ୍କ ମୁହଁରେ ହସ, ସମସ୍ତଙ୍କ ମୁହଁରେ ଏକ କଥା । ବିନୋଦ ପାଗଳ ହୋଇଯାଇଛି ! ଏକଦମ୍ ପାଗଳ ! ଅର୍ଥ ବୁଝିନି– କ'ଣ ବିବାହ ? ବେଦୀରେ ସେ ପାଗଳ । ଘର ଭିତରକୁ ପଶିଗଲି ତାର– ବାହାରି ଆସୁଥିଲା ସେ, "ଆରେ ତୁ" ଡାକିନେଲା ଘରକୁ, "ଆରେ ତୋର ସ୍ତ୍ରୀ ମଧ୍ୟ ?" ଆ ଆ– କହି ମୋତେ ଟାଣି ନେଲା ତାର ଶୋଇବା ଘରକୁ । ପଲଙ୍କ ପଡ଼ିଛି– ପଲଙ୍କ ଧାରରେ ଝୁରିଅନା-ହେନାର ମାଳା । ବକୁଳର ଗନ୍ଧ । ନବମୀ ଚନ୍ଦ୍ରର ଜ୍ୟୋତ୍ସ୍ନା ଆଲୋକିତ କରିଛି କୋଠରିଟିକୁ । ପଲଙ୍କର ଧାରରେ ଗୋଟିଏ ନାରୀର ମୂର୍ତ୍ତି ! ମୂର୍ତ୍ତିଟି ଯେପରି କଥା କହୁଛି– ପାଖକୁ ଯାଇ ଦେଖିଲି ଠିକ୍ ପ୍ରତିମାର ମୁଖ କମଳ– ଅଙ୍ଗ ସୌଷ୍ଠବ ନେଇ ସୁଶ୍ରୀ ହୋଇ ଉଠିଛି– ବିନୋଦ ପାଗଳ ପରି ମୂର୍ତ୍ତିଟାକୁ କୁଣ୍ଢାଇ ଧରି ଭାବବିହ୍ବଳରେ ଡାକିଲା, "ପ୍ରତିମା"– ପଥର ମୂର୍ତ୍ତିର ଅଧରରେ ହାସ୍ୟ ଥିଲା, ଆହୁରି ସୁନ୍ଦର ହୋଇ ଉଠିଲା । ମୁଁ ପଚାରିଲି, "ବିନୋଦ, ଏ କ'ଣ ?" ବିନୋଦର ମୁହଁରେ ସେହି ହସ, "ଏ ପରା ମୋର ପ୍ରିୟତମା ସଖୀ– ମାନସୀ ପ୍ରତିମା, ଏ ରକ୍ତ ମାଂସ ଦେହରେ ଯୌବନ ଆସେ ପୁଣି– ଏହି ଦେହରେ ମନ ବଦଳେ– ମଣିଷ ଭୁଲିଯାଏ; ଏ ଦୁନିଆରେ ସବୁ ଭୁଲ ହୁଏ, ସବୁ ଭୁଲ ହୋଇଯାଏ– କିନ୍ତୁ ମୋର ଏ ପ୍ରତିମା କେବେ ମୋତେ ଭୁଲିପାରିବ ନାହିଁ । ତା' ଅଧରରେ ସେହି ମିଠା ହସ ମୋତେ ଆନନ୍ଦ ଦେଉଥିବ ଚିରଦିନ ପାଇଁ । ଯୌବନ ଲୁଚିଯିବ ନାହିଁ, ରଙ୍ଗଫିକା ପଡ଼ିଯିବ ନାହିଁ– ମୋର ଏ ଚିର ଜୀବନ୍ତ ପୂର୍ଣ୍ଣିମା– ବସନ୍ତ । ଏ ଭଲପାଇବାଟା ଭୁଲ୍ ହେବନି– ଏ ପ୍ରତିମା ମୋତେ ଭୁଲିଯିବନି– ଏ ପ୍ରତିମା ମୋତେ ଛାଡ଼ି ଆଉ କାହା ଘରେ ଘର କରିବ ନାହିଁ– ଏ ମୋର ହୃଦୟର, ଏ ହୃଦୟର ଜ୍ୟୋତ୍ସ୍ନା । ଏ ମୋର ପତ୍ନୀ– ବାସର ରାତିର ସାଥୀ ।"

ମୂର୍ତ୍ତିରେ ଚେତନା ଆସିବାର ଯେମିତି ମୁଁ ଦେଖିପାରିଲି ।



# ଖାଦାନର ଛଣ୍ଡି

—କାରଖାନାର ପୁଙ୍ଗା ବାଜିଉଠେ ସାତଟାରେ ।

—ଖାଦାନକୁ ବାହାରନ୍ତି ମାଇପି, ମରଦ ଦଳଦଳ ହୋଇ । କାନ୍ଧକୁ କାନ୍ଧ ହାତରେ ହାତ ଛନ୍ଦି ଲମ୍ବିଥାଏ ଗୀତ । ସାନ୍ତାଳ କୋହ୍ଲ ଭୂମିଜର ଛଣ୍ଡିମାନେ— ମଥା ଉପରେ ବାଉଁଶ ଖାଂଚି ।

ଗଭାରେ କୁରଚି ଫୁଲର ପେନ୍ଥା— ଦେହରେ ନିମତେଲର ବାସନା । ଖାଦାନର ଲୁହା ଖୋଳା ମାଟିରେ ଗେରୁଆ ଲୁଗାର ରଙ୍ଗ । ହାତରେ ଧଳା ଶଙ୍ଖା, ଆଙ୍ଗୁଳିରେ ଟଙ୍କା-ସୁଉକି ପରିଧିର ସିଲିଭର ମୁଦି । ଆଉ କେତେ ଛୋଟ ଘପର ହାର— କି ହସ ! ଫାଟିପଡ଼େ ନୀଳ ଆକାଶର ବୁକୁ । ଘରିଆଡ଼େ ଘହିଁଲେ ସେ ଛଣ୍ଡି— ଯୁବତୀ ଝିଅ ।

ବାଦାମପାହାଡ଼ ଲୁହା ଖଣିର ଦକ୍ଷିଣ ଆଡ଼କୁ ଏବେ ଏକ ଖାଦାନ ଖୋଲିଛି । ତିନି ନମ୍ବର ରାଶି ରାଶି ରେଜା କୁଲି ଦୁର୍ଗମ ରାସ୍ତାରେ ଦୁର୍ଦ୍ଦମନୀୟ ହୋଇ ପାହାଡ଼ ଉପରକୁ ଉଠୁଛନ୍ତି । ଠିକ୍ ସବୁଦିନ ପରି । ରୋପ-ଉଏରେ ମାଲବୁହା ଘଲିଛି ଷ୍ଟେସନର ଗେଟ୍ ପାଖକୁ— ଆଉ ଇନ୍‌କ୍ଲାଇନ୍‌ରେ ଟନ୍ ଟନ୍ ଲୁହା ବୁହାଘଲିଛି ତଳକୁ । ଫୋନ୍ କରୁଛି— ହେଲେ, ବାବୁ— ହୋଗୟା— ହୁଏଇଆକାନା ।

କଳା ମିଚିମିଚି ଦେହ— ଜୀବନର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସବୁଜ ନାଲି ପତାକା ହଲାଇ ହଲାଇ କେଡ଼ାମ ବୁଢ଼ାର ଜୀବନ ଯାଇଛି । ଏଥର ସାଲଖୁ ଆସିଛି— ତାର ଭେଣ୍ଡା ପୁଅ । କୋଡ଼ିଏ ବର୍ଷରେ ଅପରପ୍ରାଇମେରି ପାସ୍ କଲା ସେ । ତା'ପରେ ଏବେ ଫୋନ୍‌ରେ ରଇଛି, ଆଉଦିନେ କଂଟ୍ରୋଲର ହବ । ବଡ଼ବାବୁର ଖୁସି ତା' ଉପରେ । ସାଲଖୁ ଜୀବନର ସାଥୀ ଗୋଟିଏ କରିନେଇଛି ସିନ୍ଦୂର ଘଷି । ବେଶ୍ ଗୋରା ତକତକ ଚେହେରା । ଦେଖିଲେ ସାଧାରଣ ମନରେ ଛପା ପ୍ରବୃତ୍ତି ଜାଗି ଉଠେ । ମିସା ସାହେବ ବଙ୍ଗଳାରୁ ପେନ୍ଥା ପେନ୍ଥା କନିଅର ଫୁଲ ମଥାରେ ଖୋସି ବାହାରି ଆସିବାବେଳେ— କଣେଇ କଣେଇ ସେଇ ଟାପରା ଟୋକା ଡମନା ତାର ସାରଙ୍ଗରେ ସୁର ଦିଏ—

ବଡ଼ ସୁନ୍ଦର ଦିଶେ ତାର ଜୋଡ଼ାଟା । ଯିମିତି ସତେ ସେ ବନର ଦେବୀ । ସେ ଭାରି ସୁନ୍ଦର, କମନୀୟ । ଅଣଆଦିବାସୀ ବିଜୁ ପାଟି କରେ– ଦରଓ୍ୱାନ । ମିସାର ସବୁ କିନ୍ତୁ ଉପଭୋଗ୍ୟ । ଏଗୁଡ଼ାକ ତାକୁ ଭାରି ଆନନ୍ଦ ଦିଏ । ଏଇ ଆସନ୍ତା କେଇଟା ମାସ ଭିତରେ ଆଉ ଗୋଟିଏ ଅତିଥି ଆସିବ । ସାଲଖୁ ମିସାକୁ କୁଣ୍ଢାଇ ଧରି ଗୋଟିପଣେ ନାଚିଯାଏ ସେ– ମନପୂରା ବଜାଇ ଯାଏ ଧୁମ୍‌ସା– ମାଦଳ, ଡୁବୁଲୁଡୁବୁଲୁ ଟାଂ ଟାଂ...ଟାଂ ।

ମିଟକୋଇକୁ ମିସା ଭାରି ଈର୍ଷା କରେ । ତେବେ ଭଲପାଏ । ମିଟକୋଇ ତାର ସାନ ନଣନ୍ଦ– ବୟସ ପନ୍ଦର ଷୋହଳ । ଦେହ ତାର ମିଚି ମିଚି ମୁଗୁନି ପଥର । ହେଲେ ଟୋକୀଟାର ଫେସନ କମ୍ ନୁହେଁ । ଭାଇ ବାପାଙ୍କର ଆଦରର ଧନ । ଦିକୁପରି ପିନ୍ଧେ ସେ ସାୟା ଆଉ ବ୍ଲାଉଜ । ଲୁଗା ଧଳା ନ ହେଲେ ପଦାକୁ ବାହାରେ ନାହିଁ । ମେଞ୍ଚାଏ ଗୁଡ଼ାଖୁ କାନିରେ ନ ବାନ୍ଧିଲେ ଯିମିତି ସେ ବାଟ ଚାଲିପାରିବ ନାହିଁ । ନଡ଼ିଆ ତେଲ, ଅତର ତେଲରେ ଜୁଡ଼ା ବନ୍ଧା, ଅଳତା ନ ଦେଲେ ବାହାରକୁ ଯିବ ନାହିଁ । ଘରର ସମସ୍ତଙ୍କର ଦୁଇଖଣ୍ଡି ଲୁଗା– ଖଣ୍ଡିଏ ଅଣ୍ଟାରେ ଆଉ ଖଣ୍ଡେ ଛାତିରେ ହେଲେ ହୁଏ । ତେବେ ତାର ପାତଳ ଦଶହାତ ଧଳା ଲୁଗା ଖଣ୍ଡେ ନ ହେଲେ ନ ଚଳେ ।

ବାପା-ମା ଆବ୍‌ଦାର ସହନ୍ତି ।

ମିସା ମିଟକୋଇର ରୂପକୁ ଈର୍ଷା କରେ, ଗୁଣକୁ ନୁହେଁ । ଦିହେଁ ଦିନ ଭିତରେ ଏକାସଙ୍ଗରେ ଖାଇବାକୁ ବସିଲେ ଯେପରି ମହାଭାରତ ଅଶୁଦ୍ଧ ।

ସମସ୍ତେ ପ୍ରଶଂସା କରନ୍ତି ତାର ରୂପକୁ । ଡମନା କୀବ୍ରା କୀବ୍ରା ଫୁଲପେଣ୍ଟ, ଗୋଡ଼ରେ ମୋଜା, ରବର ଜୋତା, ଦିକୁଙ୍କ ପରି କୁରୁତା– ଚଷମା ପିନ୍ଧି ସାରଙ୍ଗ ଧରେ– ଆଗୋ ପରୀରାଇଜର ରାଣୀ, ତମେ କୃପାକର । ନ ହେଲେ ମୁଁ ମଲି– ଦୟାକର ।

ମିଟକୋଇ ଆଉ ପନ୍ଦରଟା ଝୁଅପରି ଏ ପ୍ରେମ ଉପଖ୍ୟାନଗୁଡ଼ାକୁ ତାଚ୍ଛଲ୍ୟ ହସରେ ଉଡ଼ାଇ ଆଗେଇଯାଏ । ଦିନ ରାତି କାମ କରେ । ପାହାଡ଼ ଉପରେ ସାତଟା ଝୁଅପରି ପୁଅ ସାଙ୍ଗରେ ପତର ନିବୁଜରେ ଶୋଇବାର କେହି ଦେଖିନି । ସେ ସୁମି ନେତ୍ରି ଜବା ସାଙ୍ଗରେ ଶୁଏ– ମନଇଚ୍ଛା ଗାଏ ଗୀତ । ରାତିରେ ନିଝୁମତାରେ

ଶୋଇପଡ଼େ । ସାରି ସାରି ଗ୍ଲଲିଛନ୍ତି ରେଳ, ଅଫିସ ଘର ପାଖରେ ଟିଣପିଟା ଛୋଟ ଘରଟିଏ । ଛୋଟ ରାସ୍ତା । ମେଲେରିଆ ପୀଡ଼ିତ କମିଲା ବାବୁ ପାଖକୁ ଟିକଟ ବଢ଼ାଇ ଦିଅନ୍ତି– ପାଞ୍ଚ କରିଦେଲେ ଫିକ କରି ହସି ଉଠେ– ଛଣ୍ଡିର ମନ । ମନର କୁତୂହଳ । କମିଲା ବାବୁର ଡରନାହିଁ– ଘରେ ପାଞ୍ଚ ପ୍ରାଣୀ କୁଟୁମ୍ବଙ୍କୁ ମେଲେରିଆ ଜ୍ୱର ।

ଯେଉଁ ଲମ୍ବା ମାଲବୁହା ରେଳ ଛୋଟ ଲାଇନ୍ ଏବେ ତିଆରି ହୋଇଛି, କାମ ଆରମ୍ଭ ହେବ । ନୂଆ ବାବୁଟିଏ ଆସିଛି । ବେଶ୍ ଗୋରା ଚେହେରା । ଦିକୁ ହେଲେ ବି ଚମତ୍କାର ତାଙ୍କ ଭାଷା କହିପାରେ, ଆଉ ବଇଁଶୀ ବଜାଏ ଚମତ୍କାର । ରାତି ରାତି ନାଚ କରି କଟାଏ । ତାକୁ ସମସ୍ତେ ଭଲପାଆନ୍ତି । ଯିମିତି ତା’ ଭିତରେ କିଛି ଫାଙ୍କ ନାହିଁ, ଛଣ୍ଡି ଭୁଲେଇପାରେ ଚମତ୍କାର । ଟିକିଏ ହେଲେ ବି ସମୟ ଦରକାର ପଡ଼େନା । ସାରଙ୍ଗ ଧରି ଇମିତି ଗୀତ ଗାଏ ଯେ ଛଣ୍ଡିମାନେ ଢଳି ପଡ଼ନ୍ତି ତା’ ଉପରେ । ସେ ହସେ– ସମସ୍ତେ ହସନ୍ତି ।

ସେ ଏଥର ରାତିରେ ଉପରେ ରହେ, ମାନେଜର ବାବୁ ଭାରି ପସନ୍ଦ କରେ । କାମ କରାଏ ଖୁବ୍ । ନାଚେ ବି ଖୁବ୍ । ତାକୁ ଦେଖିଲେ ଛଣ୍ଡିମାନେ ଘେରି ଯାଆନ୍ତି । ନିଜର ସେତକ ସମ୍ବଳ– ଗୁଡ଼ାଖୁର ଅଧେ ହେଲେ ବି ସେ ଭାଗ ପାଏ ।

ମିଟକୋଇ ପ୍ରଥମେ ଆସେ ତାର ସାନ୍ନିଧରେ । ସମସ୍ତେ ଡାକୁଛନ୍ତି– ମିଟକୋଇ ରଡ଼ାବକୁ ସମର୍ଥନ କରି– ଶୁସକ ବାବୁ– ନାମ ତାର ସୁରେନ୍ଦ୍ର ହେଲେ ବି ଶୁକ୍ରବାର ଆସିଥିଲା ବୋଲି ଏହି ନାମକରଣ ଆନନ୍ଦ ଦିଏ ତାକୁ । ଅଜ୍ଞାତରେ ଘରକୁ ଯାଇ ସେ ସମ୍ବର୍ଦ୍ଧନା ଜଣାଏ । ସମସ୍ତଙ୍କ ଉପସ୍ଥିତିରେ ଛଣ୍ଡି ଚିବୁକର ଚୁମା ଖାଇଲେ ବି କେହି କିଛି କହିନାହାନ୍ତି ତାକୁ– ସେତକ ସ୍ୱାଧୀନତା ଥିଲା ତା’ର ।

ପ୍ରତିଦିନ ରାତିରେ ଦୁଇ ତିନିଜଣର ଯୌବନକୁ ଉପଭୋଗ କରେ ସେ । ନିର୍ବିଘ୍ନ ଏବଂ ନିର୍ଦ୍ୱନ୍ଦ୍ୱରେ ସେ ଛୋଟ ଗାଡ଼ି ଡବା ଭିତରେ ନିମନ୍ତ୍ରଣ କରେ । ସମସ୍ତଙ୍କ ମନ ଭିତରେ ଦୁର୍ବଳ ଚେତନାର ପ୍ରକାଶ ଛାତିପରେ ଢଳି ପଡ଼ି ଶମିତ ହୋଇଥାଏ । ସକାଳ ହେଲେ ପୁଣି ପୁଙ୍ଗା ବାଜେ । ଆଠ ଦଶଟା ସିଝା ଅଣ୍ଡାକୁ ତିନିମିନିଟ୍‌ରେ ଗର୍ଭସାତ୍ କରି– ଅଧସେର ଗହମ ଅଟାର ପରଟା ଦଳି ପକାଇ ପୁଣି ଯାତ୍ରା ଆରମ୍ଭ ହୁଏ ।

ମିସାର ପ୍ରଥମ ଶିଶୁଟି ଆସୁ ଆସୁ ଅଧବାଟରୁ ଫେରିଯାଇଛି । ଏବେ ସେ ସୁସ୍ଥ ହୋଇ ଉଠିଛି । ଦୁଇ ତିନିଦିନ ତାଙ୍କ ଘରକୁ ଶୁସକୁ ଆସିବାର ଦେଖିଛି । ଆଉ ମିଟକୋଇର ଚିବୁକର ଚୁମ୍ବନ ନେବାର ମଧ ଦେଖିଛି । ଆଉ ସେଇ ସଞ୍ଜ ପହରରେ ଅନ୍ଧାର ଘର ଭିତରେ– ସବୁ ଦେଖିଛି !

ଗେରସ୍ତକୁ କହିଦେବାକୁ ଇଚ୍ଛା କରୁଛି । ଆଉ ସେହି ରବିବାରଦିନ ସେ ଆସିଥିଲା ଅଯାଚିତ ଭାବରେ । ସେ କେତେ ସହଜରେ ମିସାର ଅଧରରୁ ଚୁମା ଖାଇଲା । ମିସା ଲାଜ କରିଥିଲା । ମିସାର ଲାଜ ଉପରେ ଗୋଟିଏ ରେଖା ଟାଣି ସେ ବୁକୁକୁ ଆଣି ସ୍ପନ୍ଦନ ଦେଇଥିଲା– କି ଅଦ୍ଭୁତ ମଣିଷଟାଏ– ପାଇବାକୁ କେଡ଼େ ବାସନା ହୁଏ । ମିସା ମନେ ମନେ କାନ୍ଦି ଉଠେ– ସାଲଖୁର ପାଶବିକ ମିଳନକୁ ଦୂରକୁ ଠେଲିଦେଇ ଖାଦାନ ଉପରେ କାମ କରିବାକୁ ଇଚ୍ଛା ହୁଏ । ସମସ୍ତେ ପ୍ରଶଂସା କରନ୍ତି । କେଡ଼େ ସୁନ୍ଦର, କେଡ଼େ ଭଲ ! ଡମନା ମନରେ ନିଆଁଲାଗେ– ବିଦ୍ରୋହ କରିବାକୁ ଭାରି ଇଚ୍ଛା ହୁଏ । ସେ କହେ ଦିକୁ କେଡ଼େ ବଦମାସ୍– ଛଣ୍ଡିମାନେ ବକ୍ଷ ଦୋହଲାଇ ଖନ୍ତେଇ ହୁଅନ୍ତି– ତାର ଭାରି ଭଲ ପାଜି, ବଦମାସ୍ । ଡମନାର ବିଫଳ ହୋଇଯାଏ ପ୍ରତିଜ୍ଞା– ବିଫଳ ହୋଇଯାଏ ଆଶା । ଶୂନ୍ୟ ଆକାଶକୁ ଚାହିଁ ବଇଁଶୀ ଫୁଙ୍କେ । ବଇଁଶୀ ସୁର କରୁଣ ହୁଏ । ସାରଙ୍ଗ ହୁଏ ସ୍ତବ୍ଧ । ବଣର ଫୁଲ ଜଣାଏ ଶୁଭେଚ୍ଛା– ବିରହ ବଇଁଶୀରେ ଜାଗି ଉଠେ ସ୍ପନ୍ଦନ– ବିକାଶ । ନୀଳ ଆକାଶର ମିଟିମିଟି ତାରା କରନ୍ତି ଦୁଃଖ ପ୍ରକାଶ ।

ଆଉ ସେହି ଦିକୁ ପଲ୍ଲୀର ବିରହ ସଙ୍ଗୀତ ମଧ ବେଶ୍ ସ୍ପନ୍ଦନ ଆଣେ । ସେ ଘୁମୁରି ଉଠେ ନିଜ ଭିତରେ– ଖୋଜିବୁଲେ କାହାର ସନ୍ଧାନ– ଖୋଜିବୁଲେ କାହାକୁ ନିଜ ଭିତରେ ।

ସମସ୍ତେ ବୁଝନ୍ତି– ବାଘୁଣୀ ବାଘର ଚିତା ଉପରେ ସ୍ନେହରେ ଲଟି ପକାଏ । କିନ୍ତୁ ବୁଝନ୍ତି ନାହିଁ ଡମ୍‌ନାର ବଇଁଶୀର ସୁର– ଏହି ଛଣ୍ଡିମାନେ ! ! !

ବର୍ଷା ସକାଳେ ହୋଇଯାଇଛି, ଦିହଟା ବେଶ୍ ଗାଢ଼ ଆମୋଦରେ ଅଛି । ଲୁଣ ପକା ନାଲି ଚା'ରୁ ଢୋକେ ଢୋକେ ପିଇ ସତେଜ ରଖୁଛି କୁଲି ବସ୍ତି ଯେତକ ।

ମିସା ଭାବୁଛି ଯଦି ଏହିପରି ରାତି ଗୋଟାଏ ସେ ପାଆନ୍ତା ଶୁସ୍‌କୁ ସାଙ୍ଗରେ, କି ଚମତ୍କାର ନ ହୁଅନ୍ତା ! ସାଲଖୁ କାଳିମାଟି ଯାଇଛି, କାଲି ଆସିବ । ନିମନ୍ତ୍ରଣ କରି ଆଣିବି । ମିଟକୋଇ ଅଛି– ମନ ତାର ବିଷରେ ପୂରିଗଲା । ମିଟକୋଇଟାକୁ ବି ପାର କରିବାକୁ ହେବ । ନହେଲେ ତାକୁ ଯଦି ସେ...

ହାତରେ ଗୋଟାଏ ଟିଆପକ୍ଷୀ ଧରି ପହଞ୍ଚିଲା ଶୁସ୍‌କୁ । ମିସା ମନରେ ଖେଳିଗଲା ଆନନ୍ଦ । ବନ୍ୟା ଛୁଟିଲା । ଏଇ ଆସ୍‌ବୁ ଆଜ୍ କେହି ନାଇଁ । ଶୁସକୁ ହସିଲା– ଉପରେ କାମ ଅଛି, ଚାଲନା ।

ଶୀତ ରାତି । ବୁକୁତଳ କାକର । ସମସ୍ତେ ଟିଣ ଛାତ ତଳେ ଧୁନି ଜଳାଇ ବସିଲେ । କେହି କାହାକୁ କିଛି କହିପାରିନି । ସମସ୍ତଙ୍କ ତୁଣ୍ଡରେ ଏଇଟା ଗୋଟାଏ ସୁନ୍ଦର ରାତି– ମଜାର ରାତି– ଆନନ୍ଦ ରାତି । ସମସ୍ତେ ବସିଛନ୍ତି ଅପେକ୍ଷା କରି ।

ଶୁସକୁ ଆସିଲା । ଇଞ୍ଜିନ୍‌ରେ କାମ କରୁଥିଲା । ମାଟିଆ ଫୁଲପେଣ୍ଟର ପଛପଟେ କଳା କଳା ଦାଗ । ମୁହଁରେ ଗୋଟାଏ ପିଂକା ।

ସମସ୍ତେ ଏକାଥରକେ ପାଟିକରି ଉଠିଲେ– ଶୁସକ୍ । ପ୍ରଶ୍ନ ଉଠିଲା– କୁଆଡ଼େ ଶୁସକୁ । ଶୁସକୁ ଫେରିଯାଉଥିଲା । ସୁମି କହିଲା– କୁଆଡ଼େ ଯାଉଚୁ । ଯାହାକୁ ହେଲେ ନେଇକରି ଯା । ଶୁସକୁ କହିଲା– ନାଇଁ, ମୁଁ ଯାଉଛି । ଆଜି କାହାକୁ ନେଇପାରିବିନି । ମୁହଁର ଆବରଣ ଘୁଞ୍ଚାଇ କହିଲା ମିସା– ମୁଇଁ ଆସ୍‌ଚି– ଚାଲ୍ ଚାଲ୍ ଯିବା । ଶୁସକୁ ରାଗି ଉଠିଲା– କାହାକୁ ନେବି ନାଇଁ ଆଜି । ପଳା ବାହାରକୁ– ବାହାରିଗଲା ସେ– ବାରନ୍ଦା ଛାଡ଼ି ।

ମିଟକୋଇ ଗରମର ଆମେଜରେ ନିଆଁ ଧୁନି ପାଖରେ– ଶୁସକୁ ଉପରେ ମାଡ଼ର ଶବ୍ଦ ଶୁଣୁଥିଲା । ଆଉ ତୀବ୍ର ନାରୀର କଣ୍ଠ । ଶୁସକୁ ପାହୁଚ ତଳେ ପଡ଼ିଯାଇ ଚିତ୍କାର କରୁଥିଲା ।

ମିଟକୋଇ ହସି ହସି ବଣ ଜଙ୍ଗଲ ଲୁହାର ପଥର ଉପରେ ଜୀବନ ଆଣି ଦେଉଥିଲା ।



# ସୁକାନ୍ତିର ଭାଇ

ମୋର ସ୍ତ୍ରୀ ବିଜନ ଦାଣ୍ଡରୁ ଟେଲିଗ୍ରାମଟା ଆଣି ମୋ ଆଗରେ ଫାଡ଼ିଦେଇ କହିଲା– ପଢ଼ିଲ ପଢ଼ିଲ, କେଉଁଠୁ ଆସିଛି । ମୁଁ ଥରେ ଆଖି ଫେରାଇ ନେଇ ଅଇଁଠା ହାତଟାରେ ଠିଆ ହୋଇ ରହିଲି । ମୋର ହାତ ବନ୍ଦ ଅବସ୍ଥା ଦେଖି ସେ ଟେଲିଗ୍ରାମଟି ନେଇ ପଢ଼ିବାକୁ ଚେଷ୍ଟା କଲା– ବିନୋଦବାବୁ ଲେଖିଛି, I am in distress come sharp. ମୁଁ ଛୋଟ ହଁଟିଏ କରି ହାତ ଧୋଉ ଧୋଉ ଭାବୁଥିଲି ବହୁତ କଥା । ଏବେ ନୂଆ ବାହାହୋଇ ତା' ସ୍ତ୍ରୀକୁ ଆଣିଛି । ପୁଣି ପ୍ରେମ ବିବାହ ମଧ୍ୟ କରିଛି ।

ସ୍ତ୍ରୀ ଆମର ଏଥିରେ ଭାରି ଚିନ୍ତିତ, ମୋ ବନ୍ଧୁପାଇଁ ନୁହେଁ ତାଙ୍କ ବାନ୍ଧବୀ ସୁକାନ୍ତି ପାଇଁ । ସେ ଅଡ଼ି ବସିଲେ– ବିଚରୀ ସୁକାନ୍ତିଟି ମୋର କେତେ ଭାବନାରେ ପଡ଼ିଥିବ ଲୋ !

ମୁଁ ହଁ ନା କ'ଣ ଭାବୁଛି । ବିଜନ ସୁଟକେଶ୍ ବେଡ଼ିଂ ବାନ୍ଧି ତିଆର– ଗାଡ଼ି ବେଳ ହୋଇଗଲାଣି । ତମେ ବେଗି ବାହାରିପଡ଼ । ରିକ୍ସା ଦାଣ୍ଡ ଦୁଆରେ ଠିଆହୋଇଛି ।

ନିରୁପାୟ ହୋଇ ପିନ୍ଧାପିନ୍ଧି କରି ବାହାରିପଡ଼ିଲି । ମେଘୁଆ ପାଗ । ବର୍ଷା ଅବିରାମ ଗତିରେ ଚାଲିଛି । ଘର ଛାଡ଼ି କ'ଣ ବାହାରକୁ କେବେ ମନ ବଳେ । ତଥାପି ବନ୍ଧୁ ବା ବାନ୍ଧବୀ ବିପଦରେ ପୁଣି ପ୍ରେୟସୀ ନିଜେ ସବୁ ସଜାଡ଼ି ଦେଉଛନ୍ତି ।

ଭୁବନେଶ୍ୱର ଷ୍ଟେସନ ପହଞ୍ଚିବା ବେଳକୁ ଦେଖିଲି ବିନୋଦ ଏ ପାଖରୁ ସେପାଖ ସେପାଖରୁ ଏପାଖ ପ୍ଲାଟଫର୍ମରେ ଦୌଡ଼ାଦୌଡ଼ି ଆରମ୍ଭ କରିଦେଇଛି । ମୋତେ ଦେଖି ରୀତିମତ ଏତେ ଜୋରରେ କୁଣ୍ଢାଇ ପକାଇଲା ଯେ ତିନିଦିନ ଧରି ତା' ଗୋଲଡ଼୍ ଗୋଲଡ଼୍ ବୋତାମର ଦାଗ ମୋ ଛାତି ଉପରୁ ଯାଇନଥିଲା ।

ମୋତେ ଗୋଟାଏ ସିଗାରେଟ୍ ଦେଇ ଦ୍ୱିତୀୟ ଶ୍ରେଣୀର ଅପେକ୍ଷା ଘରକୁ ଡାକିନେଲା ।

–ଓହୋ, ତୁ ନ ଆସିଥିଲେ ହୁଏତ ମୋତେ ଆତ୍ମହତ୍ୟା କରିବାକୁ ପଡ଼ିଥାନ୍ତା ରେ ! ଯେଉଁ ବିପଦରେ ପଡ଼ିଛି ।

–ବେଶ୍ ବିପଦଟା କ'ଣ ଆରମ୍ଭ ହେଉ– ଶୀଘ୍ର ସମାଧାନର ଉପାୟ ନଖୋଜିଲେ ପୁଣି ଆସ୍ତେ ଆସ୍ତେ କଥା ଗଡ଼ି ଗଡ଼ି ଯିବ ଯେ !

–ମୋର ଆଗ ସର୍ତ୍ତଟି ହେଉଛି, ମୋପାଇଁ ତୋତେ ସବୁ କରିବାକୁ ହେବ ।

ମଞ୍ଜୁର । କଣ ଆରମ୍ଭ କର ।

–ତୁ ସୁକାନ୍ତିକୁ ଜାଣୁ ।

କହିଲି, ହଁ ଭଲକରି ଜାଣେ । ତା'ପାଇଁ ତୁ କବିତାର ତିନୋଟି ଭଲ୍ୟୁମ୍ ସଜାଡ଼ି ସାରିଛୁ । ପାଞ୍ଚଟା ବହି ପ୍ରକାଶ କରିସାରିଛୁ । ବନ୍ଧୁ ଗହଣରେ ଅଧିକ ସ୍ତ୍ରୀପ୍ରେମୀ ବୋଲି ଖ୍ୟାତି ପାଇଛୁ । ଆଉ ସୁକାନ୍ତି ଯେ ଉଚ୍ଚଧରଣର ଅଭିମାନିନୀ ଏବଂ ସମସ୍ତ ବନ୍ଧୁଙ୍କ ସ୍ତ୍ରୀମାନଙ୍କଠାରୁ ସୁନ୍ଦରୀ ଏହା ମଧ୍ୟ ଜାଣିଛି ।

–ସେକଥା ତୋତେ କହିପାରୁନାହିଁ ରେ ! ଆଜକୁ ତିନିଦିନ ଧରି ସୁକାନ୍ତି ଜଳଖିଆ ଖାଉ ନାହିଁ କେବଳ ଭାତ ଓ ରୁଟି ଖାଉଛି । ସେ ଯଦି ନଖାଏ ତେବେ ତାର ଦେହ ରହିବ କିପରି କହିଲୁ ?

କି ଅଜବ କଥା । ସୁକାନ୍ତି କଥା କହୁଁ କହୁଁ ତା ଆଖିରୁ ଲୁହ ବି ଦିଠୋପା ଗଳି ପଡ଼ିଲା । ମୋତେ ଯେତେ ରାଗ ମାଡ଼ିଲା ସେତିକି ଦୟା ମଧ୍ୟ ଲାଗିଲା । ହାୟ ନୂଆ ବାହା ହୋଇଥିବା ଏ ବିଚରାମାନଙ୍କ ପାଇଁ କିଏ ଚିନ୍ତା କରେ ଭଲା !

ମୁଁ କହିଲି– କଣ ଦେହପା ଖରାପ ହୋଇଥିବ । ଡାକ୍ତର ଡାକି ଦେଖା । ନହେଲେ ମୁଁ ଯାଉଛି ସବୁ ବୁଝିବି । ତୋତେ ଯଦି ଅଡୁଆ ଲାଗୁଛି ମୁଁ ବିଜନକୁ ପଠାଇ ଦେଉଛି ସେ ସବୁକଥା ବୁଝି ପକାଇବ ।

ଗୋଟାଏ ହାଇମାରି କହିଲା– ଆରେ ସେତକ ଯଦି କଥା ହେଇଥାନ୍ତା ନା ମୋର ଢେର୍ ବୁଦ୍ଧି ଥିଲା । ଗୋଟାଏ ଜାଗାରେ କଥାଟା ପରା ଗଣ୍ଠି ପଡ଼ିଛି । ଯଦି ଆଜି ସେ କଥା ସମାଧାନ ନହୁଏ, ତେବେ କାଲିଠାରୁ ତାର ଭାତଖିଆ ମଧ୍ୟ ବନ୍ଦ ।

କହୁଁ କହୁଁ ବିନୋଦର ଆଖି ଛଳଛଳ ହୋଇଗଲା । ଏଇ ବିନୋଦ ନାରୀ-ପ୍ରସଙ୍ଗ ପଡ଼ିଲେ ଭାଷଣ ଦେଉଥିଲା– ମୁଁ ଏପରି ଜଣକୁ ବିବାହ କରିବାକୁ ଚାହେଁ–

ସେ ଶିକ୍ଷିତ ହୋଇଥିବ । ଇଞ୍ଚେ ନାକ ହୋଇଥିବ– ନାକ କାନ ଅଢ଼େଇ ଇଞ୍ଚ ଫାଙ୍କ ଥିବ । ସୁନ୍ଦର ଥିବ । ପଇସା ରୋଜଗାର କରୁଥିବ । କାଳୀ ଗାଈଟିଏ ହୋଇଥିବ । ଭଲ ଦୁଧ ଦେଉଥିବ । କମ୍ ଖାଉଥିବ ଏହିପରି । ଆଉ ଆଜିର ବିନୋଦ– ଆଖିରୁ ଲୁହ ଝରିପଡୁଛି କଥା କଥାରେ । ସ୍ତ୍ରୀର ଟିକିଏ ଏପାଖ ସେପାଖରେ ।

ବିନୋଦ ଚନ୍ଦ୍ର ଉପାଖ୍ୟାନ ଆରମ୍ଭ କଲେ–

ବିନୋଦ ତାର ହାତ ଗଣି କହିଲା ଆଜକୁ ସାତଦିନ ଆଗେ ମୁଁ କଲିକତା ଯାଇଥିଲି । ସୁକାନ୍ତି ଆଗରେ ମିଛ କହୁଁ କହୁଁ କହି ପକାଇଲି– ତମର ଅମୁକ ଭାଇ ସାଙ୍ଗେ ଦେଖା ହେଇଥିଲା । ମୁଁ କହିଛି ଆସିବାକୁ । ତୁ ତ ଜାଣୁ ସୁକାନ୍ତିର ନିଜର ଭାଇ କେହି ନାହାନ୍ତି । ଭାଇଟିର ନାମ ହେଉଛି ଯଶୋବନ୍ତ । ସୁକାନ୍ତିର ମା' ତାଙ୍କ ଭଉଣୀଠାରୁ ଏହାକୁ ପୁଅ କରି ନେଇଥିଲେ । ଯଶୋବନ୍ତଙ୍କର ଯଶ କହିଲେ ନସରେ । ଦଶବର୍ଷ ବେଳୁ, ସୁକାନ୍ତିକୁ ଯେତେବେଳେ ଅଢ଼େଇ ବର୍ଷ, ନେଭିରେ ଗଲେ ଯେ ଆଉ ଲେଉଟିଲେ ନାହିଁ ଏପର୍ଯ୍ୟନ୍ତ କେତେଦିନ ପରେ ସେ ଖବର ପଠାଇଲେ ଯେ କଲିକତାରେ ଏକ ବଙ୍ଗୀୟ ମହିଳାଙ୍କର ପାଣିଗ୍ରହଣ କରି ସେଠାରେ ଏକ ଉଚ୍ଚପଦସ୍ଥ କର୍ମଚାରୀ ହୋଇ ରହିଛନ୍ତି । ସୁକାନ୍ତି ବାହାଘରକୁ ଆସି ପାଞ୍ଚଶହ ଟଙ୍କାର ଏକ ବଡ଼ ଉପହାର ମଧ୍ୟ ପଠାଇଥିଲେ । ମୁଁ ଏହିପରି କହୁଁ କହୁଁ ତାରିଖ ମଧ୍ୟ ଭୁଲରେ କହି ପକାଇଥିଲି । ସେତିକି ହେଇଚି କାଳ । ଦିନ ଯେତେ ଗଡ଼ି ଗଡ଼ି ଯାଉଛି– ତମେ ମିଛ କହୁଛ, ନାହିଁକି କହିଲ । ଏଇ କଥା ନେଇ ଯେତେ ଘଣ୍ଟାଚକଟା ।

–ତେବେ କଣ କରିବାକୁ ହେବ ? କହିବି, ଯେ ବିନୋଦ ମିଛ କହିଛି ! ତାକୁ କ୍ଷମା କର, ଦେବୀ । ଏଇ ତ– ନା' ଆଉ କଣମ ?

–ଚୁପ୍, ସେ କଥା କହିଲେ ମୁଁ ଆଉ ଏ ଦୁନିଆରେ ରହିପାରିବିନି । ସେ ବେଳ ଗଲାଣି । ମୁଁ କ'ଣ ସେ କଥା ନକହି ଛାଡ଼ିଛି । କିନ୍ତୁ ସେ କ'ଣ କହିଲା ଜାଣିଛୁ– ତମେ ମୋତେ ଭୁଲେଇ ଦେବାକୁ ଏକଥା କହୁଚ ନା !

ତୋତେ ଯଶୋବନ୍ତ ସାଜିବାକୁ ହେବ ।

–ମାନେ, ସୁକାନ୍ତି ଯଦି ଚିହ୍ନି ପକାଏ ?

—ସେ ତ ତୋତେ କେବେ ଦେଖି ନାହିଁ । ଚିହ୍ନିବା ପ୍ରଶ୍ନ ଉଠୁଛି କେଉଁଠୁ ? ମୋର ଜୀବନ-ମରଣବେଳେ ଏଇ ଅନୁରୋଧ– ତା'ର ଅନଶନଟି ଯେମିତି ଭାଙ୍ଗିଯାଏ । ନହେଲେ, ମୋର ଅବସ୍ଥା ଯେ କ'ଣ ହେବ ତୁ ଭାବିପାରୁଚୁ ?

—ଆଚ୍ଛା ବିନୋଦ, ଆମେ ସୁକାନ୍ତି ସହିତ ଭାଇଭଉଣୀ ପରି ନିରୋଳାରେ କଥାବାର୍ତ୍ତା କରିବୁ, ଖାଇବୁ, ହସିବୁ । ତୁ କିଛି ମନେ କରିବୁ ନାଇଁ ତ ? ଫେର୍– ପଛରେ... । ବିନୋଦ କହିଲା– ସେ ବିଶ୍ୱାସ ମୋର ଅଛି ଭାଇ । ସେଥିରେ ଚିନ୍ତା କରିବା ଦରକାର ନାହିଁ । ମନେରଖ କେତେଗୁଡ଼ାଏ କଥା । ଅସଂଖ୍ୟ ଜାଗାରେ ତ ତୁ ବେଶ୍ ସୁନ୍ଦର manage କରିପାରୁ, ତୁ ଠିକ୍ ଚଳାଇ ନେବୁ–

—ବେଶ୍ ଗୋଟାଏ କଥା । ବିଜନକୁ ଏକା ଛାଡ଼ି ଆସିଛି । ଚାକର ଟୋକାଟା ଅଛି । ଟିକିଏ ଯାଇ ଦେଖାଶୁଣା କରି ଆସିବୁ । ଚାଲ, ମୁଁ ଦୁଇ ଦିନରୁ ବେଶୀ ରହିପାରିବି ନାହିଁ ।

ବିନୋଦ ଘରକୁ ଏଇ ପହୁଞ୍ଚିଛୁ ସୁକାନ୍ତି ଦୌଡ଼ିଆସି ମୋ ଗୋଡ଼ତଳେ ପଡ଼ି କହିଲା– ବୁଢ଼ା ଭାଇ, ଏବେ ଯାଇ ଆସିଲ । ନୂ'ଆଉଙ୍କୁ ଆଣିଲ ନାହିଁ । ମୁଁ ବେଶ୍ ବଙ୍ଗଳା ଓଡ଼ିଆରେ କହିଲି– ବୁଝିଲ ସୁକାନ୍ତି, କମ୍ ସମୟ ମିଳେ । କି ବିସ୍ତର କାଜ ଚାଲିଛି ।

ମୁଁ ଘର ଭିତରକୁ ଗଲାପରେ ବିନୋଦକୁ କହିଲା ସୁକାନ୍ତି "ଆଜି ରାମାକୁ ବଜାର ଯିବାକୁ ମନା କରିଦେଇଛି । ତମେ ଆଜି ଯାଅ– ଶୀଘ୍ର ଆସିବ । ସବୁ ଭଲ ଜିନିଷ ଆଣିବ ।" ବିନୋଦ ବିଶ୍ୱସ୍ତ ଭୃତ୍ୟ ପରି ଥଳି ଧରି ବାହାରିଗଲା ।

ମୋ ପାଇଁ ଗାଧୁଆ ଘରେ ପାଣି, ସାବୁନ, ତେଲ ଏକ ମିନିଟରେ ସୁକାନ୍ତି ପ୍ରସ୍ତୁତ କରିଦେଲା । ବିନୋଦର ପଇସାରୁ କିଣା ରସଗୋଲା ହାଣ୍ଡିଟି ଭାଙ୍ଗି ପଡ଼ୋଶୀ ଘରମାନଙ୍କୁ ବାଣ୍ଟିଲା । ମୁଁ ମୋର ଗାମ୍ଭୀର୍ଯ୍ୟ ଏବଂ ମେଜାଜ୍‌ରେ ରହି ସବୁ ଲକ୍ଷ୍ୟ କରୁଥିଲି ।

ମୁଁ ଗାଧୋଇସାରି ଲୁଗା ପିନ୍ଧିଲା ବେଳକୁ ସୁକାନ୍ତି ନଅ ତରକାରି ଛଅ ଭଜା ତିଆରି କରିସାରିଲାଣି । ଆମେ ଖାଇବାକୁ ବସିଲୁ । ମୋର ଥାଳି ଓ ତାଟିଆରେ ଖୁବ୍ ଏବଂ ଅଧିକା ଜିନିଷ ଥିଲା ବିନୋଦ ଅପେକ୍ଷା । ବିନୋଦ ଟିକିଏ କାହିଁକି ବେଶ୍

ବେଶୀ ଖାଦ୍ୟପ୍ରିୟ । ସେ ମନ ଦୁଃଖରେ ଖାଉଥାଏ । ବାଢ଼ି ଦେଇସାରି ନିଃସଙ୍କୋଚରେ ସୁକାନ୍ତି ମୋ ସହିତ ଖାଇବାକୁ ବସିଲା ଓ ମୋତେ ଗେଲରେ ଖୁଆଇ ଦେଲା । ଆଉ ମୁଁ ମଧ । ବିନୋଦ ବିଚରା ଯେପରି ଏକ ଅତି ଅସ୍ୱାଭାବିକ ପରିସ୍ଥିତିରେ ପଡ଼ିଲା । କିଛି କହିପାରୁ ନଥାଏ କି କିଛି ହୁଏତ ଭାବିପାରୁ ନଥିବ ।

ଖାଇବା ପରେ ସୁକାନ୍ତି ପାଖଘରେ ଡାକି ବିନୋଦକୁ ଡାକିଲା– ଖାଇଲାବେଳେ ହାଣ୍ଡି ପରି ମୁହଁଟା କରିଥିଲ କାହିଁକି ? ଏତେଦିନ ପରେ ଭାଇଟିଏ ଆସିଛି, କ'ଣ ପକାଇ ଦିଅନ୍ତି ? ଗେଲ ହୁଅନ୍ତି ନାହିଁ ।

ରାତି ଆସିଲା । ବିନୋଦ କାମକୁ ଯାଇଛି ବିଚରା । ମୁଁ ଓ ସୁକାନ୍ତି କଥାବାର୍ତ୍ତା ହୋଇ ଶୋଇପଡ଼ିଛୁ । ସକାଳୁ ଉଠିଲା ବେଳକୁ ବିନୋଦ ଖୋଲା ଖୋଲା ଆଖି କରିଛି । ମୁଁ ବେଶ୍ ବୁଝିପାରିଲି ଡ୍ରଇଂରୁମ୍‌ର ମଶା ମାଛି ଭିତରେ ସେ ରାତିଟି କଟାଇଛି ।

ତା' ଆରଦିନ ବିନୋଦ ଯେଉଁ ଚୁପ୍ ଚୁପ୍ କଥା କହେ ମୋତେ କହିଲା ନାହିଁ । ବୁଝିଲି, ମୋ ଉପରେ ଈର୍ଷାରେ ରାଗରେ ସେ ଜଳିଯିବଣି । କ'ଣ କରିବ, ନିଜେ ତ ଭିଏଇଛି ।

ବିଜନ କଥା ଭାବି ରାତିରେ ମୋର ନିଦ ହେଉ ନାହିଁ । କ'ଣ ଆଉ କରାଯିବ ।

ଭଗବାନଙ୍କୁ ଦଣ୍ଡବତ କଲି ଦ୍ୱିତୀୟ ଦିନ ଶେଷରେ । ଏବେ ଯାତ୍ରା ଶେଷ ହେଲା । ସୁକାନ୍ତି କିନ୍ତୁ ନଛୋଡ଼ବନ୍ଦା । ସେ ଛାଡ଼ିବାକୁ ମୋଟେ ତିଆର ନୁହେଁ ।

ଏ ଭିତରେ ବିଚରା ବିନୋଦ ଅବହେଳିତ ହୋଇ କେବଳ ଚିତ୍କାର କରୁଛି । ମୁହଁ ଫିଟାଇ କିଛି କହିପାରୁନାହିଁ । ଏପଟେ ସୁକାନ୍ତି ନଛୋଡ଼ବନ୍ଦା । ବିଜନ ମଧ, ବୋଧହୁଏ ବ୍ୟସ୍ତ ହୋଇପଡ଼ିଥିବ । ଆଉ ଉପାୟ କିଛି କ'ଣ ଦିଶୁଛି କି ?

ଦୁଇଦିନରୁ ଚାରିଦିନ ହୋଇଗଲା । ସୁକାନ୍ତିର ସ୍ନେହ ବଢ଼ି ବଢ଼ି ଚାଲିଛି । ଭାଇ ବୋଲି ରଖି ଥୋଇ ଦେଉନାହିଁ । ଏଇ ଚାରିଦିନ ବିନୋଦ ଡ୍ରଇଂରୁମ୍‌ରେ ମଶା, ମାଛି, ମୂଷା, ଓଡ଼ଶ ଭିତରେ କଟାଇଛି । ମୁହଁ ତାର ଶେତା ପଡ଼ିଯାଇଛି । ଆଖି ଦୁଇ ଇଞ୍ଚ ପଶିଯାଇଛି । ମୁଁ ସୁକାନ୍ତିକୁ ବିନୋଦର ଯତ୍ନ ନେବାକୁ ଅନୁରୋଧ କରିଛି । ସୁକାନ୍ତି ବିନୋଦକୁ ବେଖାତିର କରିଛି ।

ବିନୋଦର ଏ ଦୁର୍ଦ୍ଦଶା ଦେଖି ମୁଁ ମଧ୍ୟ ଚିନ୍ତାରେ ପଡ଼ିଛି ।

ହଠାତ୍ ସେଦିନ ସଞ୍ଜରେ ମୁଁ ଓ ସୁକାନ୍ତି ଡ୍ରଇଂରୁମରେ ବସିଛୁ– ବାହାରେ କାହାର ଶବ୍ଦ ଆସିଲା । ଆରେ ଏ ତ ବିଜନ ! ଭଗବାନ, ମୋର ଦେହରେ ଆଉ ରକ୍ତ ନଥିଲା । ସୁକାନ୍ତି କବାଟ ଖୋଲିବାକୁ ଗଲାବେଳକୁ ମୁଁ ସୋଫା ତଳ ଫାଙ୍କରେ ନିଜକୁ ଗଳାଇ ଦେଇ ନିରାପଦରେ ରଖିଛି ।

ଦୁଇ ବାନ୍ଧବୀଙ୍କର ମିଳନ । ଜୋର ଦେଇ ସୁକାନ୍ତି କହିଲା– ଆରେ ଭାଇ କୁଆଡ଼େ ଗଲେ ? ମୋ ଭାଇ ଆସିଛନ୍ତି । ବିଜନ କହିଲା– କେଉଁ ଭାଇ ତୋର ମ– ଆମର ସେ ଆସିଥିଲେ କୁଆଡ଼େ ଗଲେ କିଛି ଖବରଟାଏ ନପାଇ ଆସିଲି । ବିନୋଦ ହସି କହିଲା– ବ୍ୟସ୍ତ ହେବେ ନାହିଁ ସେ ନିରାପଦରେ ଅଛି ଆଉ ସୁକାନ୍ତିର ଭାଇ ହିସାବରେ ପାର୍ଟ କରୁଛି । ମୁଁ ଟିକିଏ ଆଶ୍ୱସ୍ତି ଅନୁଭବ କରୁଥିଲି ।



# ନିଖିଳେଶ ଓ ତାର ବନ୍ଧୁମାନେ

ଏ ପୃଥିବୀରେ ସମସ୍ତଙ୍କର ଦାୟିତ୍ୱ ଯେ ବଢ଼ିଯାଇଛି ଏକଥା ସବୁ ନେତାମାନେ କହନ୍ତି । ଅଥଚ ଏଗୁଡ଼ିକ ସହିତ ଯେ ସେମାନଙ୍କର ମେଳ ନାହିଁ, ସମ୍ବନ୍ଧ ନାହିଁ, ବିଚରା ଜନତା ବୁଝି ମଧ ବୁଝିପାରେ ନାହିଁ ।

ନିଖିଳେଶ ତାର ରିପୋର୍ଟରେ ଏଗୁଡ଼ାକର ମୂଲ୍ୟ ନଦିଏ ବୋଲି କୌଣସି ନେତୃସ୍ଥାନୀୟ ବ୍ୟକ୍ତିଙ୍କଠାରୁ ସେ ଚ’ ଜଳଖିଆ ଅଣ୍ଡା– ଏପରିକି ଡିନର୍‌ରେ ସ୍ଥାନ ପାଏନା ।

ନିଖିଳେଶ ସାମ୍ବାଦିକ । ଏ ଯୁଗରେ ତିନିଜଣ ଭୟାନକ ଲୋକ ଅଛନ୍ତି– ଇନ୍‌ସ୍ୟୁରେନ୍‌ସ୍ ଦଲାଲ, ବିବାହର ଘଟକ ଏବଂ ପ୍ରେସ୍ ରିପୋର୍ଟର ।

ନିଖିଳେଶ ଯେ ଏହି ସ୍ତରକୁ ଆସିଲା ଏବଂ ରିପୋର୍ଟର ହିସାବରେ ପତ୍ରିକାର ଗୁରୁତ୍ୱ ବଢ଼ାଇଲା ଏହାର ମୂଳରେ ଏକ ରହସ୍ୟ ରହିଛି ।

ନିଖିଳେଶ ପିଲାଟି ଦିନରୁ ଦୁଃଖକ୍ଲେଶରେ ନିର୍ଯାତିତ ହୋଇ ଠିକ୍ ଜିନିଷଟାକୁ ଚିହ୍ନିବାକୁ ଶିକ୍ଷା କରିଥିଲା । ବିଭିନ୍ନ ଆନ୍ଦୋଳନରେ କଂଗ୍ରେସ ସରକାର ସ୍ୱାଧୀନତା ପରେ ତାକୁ ଜେଲ୍‌ରେ ପୂରାଇଥିଲେ । କିନ୍ତୁ ନିଖିଳେଶ ସେଇଆ ହିଁ ଥିଲା ।

ଯେଉଁଦିନ ସମସ୍ତେ ଶୁଣିଲେ ଯେ ନିଖିଳେଶ ପୁଣି ଚାକିରି କଲା– ତାହା ପୁଣି ଏକ ପ୍ରଚାର ବିଭାଗରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ତାକୁ ବହୁ ପ୍ରଶ୍ନ ପଚାରୁଥିଲେ । ନିଖିଳେଶ ନୀରବ ହୋଇ ରହିଥିଲା । ବହୁତ ହୁଏତ କହିବାର ଥିଲା । ସେ କେଇପଦ କହିଲା– ଅନୁଭୂତି ସବୁ ପାଥେୟ କରି ରଖିଲା ।

ନିଖିଳେଶର ଯୋଗ୍ୟତା ଥିଲା, ପାଣ୍ଡିତ୍ୟ ଥିଲା, ସର୍ବୋପରି ଥିଲା ତାର ବିଚାରଶକ୍ତି । ନିଖିଳେଶ ଚାକିରି କ୍ଷେତ୍ରରେ ଦେଖିଲା ତାର ଯୋଗ୍ୟତାଗୁଡ଼ିକ ସବୁ ଅକାମୀ । ସେ ଭଲ ଭାବରେ ଖୋସାମତ୍ କରିପାରୁନାହିଁ । ମଦ, ମାଇକିନା, ଅର୍ଥ କୌଣସି ପ୍ରକାରର ଯୋଗାଇବା ପରିବର୍ତ୍ତେ ସେ ରୀତିମତ ଏହାର ଅଭିଯୋଗ କଲା । ତା’ ପଛରେ ବହୁ ବନ୍ଧୁମାନେ ମଧ ଯୋଗଦେଲେ ।

ସବୁ ଦୋଷ ତାଙ୍କ ନିଖିଳେଶ ଉପରେ ହେଲା ସମସ୍ତଙ୍କ ରାଗ । ଫଳରେ ମାତ୍ର ଦୁଇବର୍ଷ ଭିତରେ ଓଡ଼ିଶାର ତେର ଜିଲ୍ଲା ବୁଲି ଆସିଲା । ଅନୁଭୂତି ଆଣିଲା ।

ଯେଉଁଦିନ କଳାହାଣ୍ଡି ବଦଳି ହେଲା, ସେ ଇସ୍ତଫା ଦେଇଥିଲା ଏବଂ ବନ୍ଧୁମାନଙ୍କୁ ଲେଖିଥିଲା– ଏବେ ସେ ଭଲ ଭାବରେ ନିଶ୍ୱାସ ମାରିପାରିବ ।

ନିଖିଳେଶ ଖବରକାଗଜରେ ରହିବା ପରେ ଯେଉଁମାନେ ତାର ଚରିତ୍ର ସମ୍ବନ୍ଧରେ ଲେଖିଥିଲେ ସେମାନଙ୍କ ଚରିତ୍ର ସେ ଲେଖିବାକୁ ଆରମ୍ଭ କଲା ।

ଟଙ୍କା ପ୍ରଲୋଭନ ଆସିଲା ।

ଡିନର୍ ମିଳିଲା ।

ମିଳିଲା ଜୁହାର, ପ୍ରଚୁର ।

ଯେଉଁମାନେ ତାଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଥିଲେ, ବଡ଼ ବଡ଼ ତାରିଫ କରି ଭେଟିଲେ ।

ନିଖିଳେଶ କିନ୍ତୁ ଅବିକଳ ହୋଇ ରହିଲା । ଖର୍ଚ୍ଚ ଭିତରେ ତାର ସିଗାରେଟ ବଢ଼ିଲା, ଋଣ ବଢ଼ିଲା ।

ନିଖିଳେଶ ଜୀବନରେ କାହାର ଛନ୍ଦପତନକୁ ଲକ୍ଷ୍ୟ କରିନାହିଁ । ସେ ଯେପରି ଚାଲିଛି ଗୋଟାଏ ଲକ୍ଷ୍ୟରେ । ପଇସା ମିଳୁ ନମିଳୁ । ପ୍ରଶଂସା ମିଳୁ ନମିଳୁ । ତା' ନାମରେ କିଏ କୁତା ପୋଷୁ ନ ପୋଷୁ...

ସମ୍ପାଦକ ଦିନାକେତେ ମଝିରେ କ୍ଷୁବ୍ଧ ହୋଇଥିଲେ । କୁଆଡ଼େ ସରକାରୀ ବିଜ୍ଞାପନ ମିଳୁନାହିଁ । ନିଖିଳେଶ ସେଇକଥା କହିଲା– ମୁଁ ମୋତେ ପରୀକ୍ଷା କରିସାରିଛି । ଆପଣଙ୍କର ଯାହା ଇଚ୍ଛା ।

ହଠାତ୍ ନିଖିଳେଶ ରୋଗରେ ପଡ଼ିଲା । କାମଳ ରୋଗ । ଯେଉଁ ଘରେ ଭଡ଼ା ଥିଲା– ଆର ପାଖରେ ଜଣେ ଶିକ୍ଷୟିତ୍ରୀ ଥିଲେ, ମଣିବାଳା ଦେବୀ । ପଡ଼ନ୍ତ ରୌଦ୍ର ପରି ଯୌବନ ।

ଶିକ୍ଷୟିତ୍ରୀ ଆଶା କରିଥିଲେ ନିଖିଳେଶ ପ୍ରଥମେ ପରିଚୟ କରିବାକୁ ଆସିବ । କିନ୍ତୁ ଏ ଯେଉଁ ସମାଜ– ଯେଉଁଠି ପାଣି ନିଆଁ ବାଛନ୍ଦ କରିବାର ଉପାୟ ନାହିଁ– ସେଲୁନ– ହୋଟେଲ– ଲଣ୍ଡ୍ରି– ମାଇକ୍ ପରିବେଶଟାକୁ ବଦଳାଇ ଦେଇଛି; ଟି ପାର୍ଟି– ଦୁଇଖଣ୍ଡି ବିସ୍କୁଟ ଗୋଟିଏ କଦଳୀ– କପେ ଚା ମାତ୍ର ।

ନିଖିଳେଶର ଭଦ୍ରମହିଳାଙ୍କ ସହିତ ସେହି ଡାକ୍ତରଖାନାର ବେଡ୍ ଉପରେ ପରିଚୟ ହେଲା । ଶିକ୍ଷୟିତ୍ରୀଙ୍କର ଚେଷ୍ଟା ଓ ଯତ୍ନରେ ନିଖିଳେଶ ଶୀଘ୍ର ଆରୋଗ୍ୟଲାଭ କରି ବସାକୁ ଫେରିଲା ।

ଏତେଦିନ ପରେ ତାର ଗାଁ– ତାର ଘର– ତା' ବୋଉ କଥା ମନେପଡ଼ିଲା । ସେ ଚିଠି ଲେଖିଲା । ଉତ୍ତର ମିଳିଲା ବୋଉ ତାର ବହୁଦିନରୁ ଦେହ ତ୍ୟାଗ କରିଛନ୍ତି ।

ନିଖିଳେଶ କିଛିଟା ଗମ୍ଭୀର ହୋଇ ଉଠିଲା ଏବଂ ଅବସନ୍ନ ଦେଖାଗଲା ।

ବନ୍ଧୁମାନେ ତାକୁ ଦିନେ ଦେଖିଲେ ସେ ଷ୍ଟେସନରେ ଜିନିଷପତ୍ର ଧରି ବାହାରିଛି । ପଛରେ ଆସିଲେ ଶିକ୍ଷୟିତ୍ରୀ ମଣିବାଳା ।

ନିଖିଳେଶକୁ କହିଲେ ଫେରିଯିବାକୁ ।

'ଫେରିଯିବା' କଥା ଶୁଣି ନିଖିଳେଶ କହିଲା ମୋତେ ଅଜ୍ଞାତରେ ମରିବାକୁ ଦିଅ । ଜଣାଇ ମରିବାରେ ଗୌରବ ନାହିଁ– ପଛରେ ମୋ ପାଇଁ କେହି ଚିନ୍ତା କରିବେ । ମୋ ମଲାପରେ ମୋର ସ୍ମୃତିପାଣ୍ଠି– ସ୍ମରଣିକା ଛପେଇ ସେମାନେ ବଡ଼ ହେବେ– ପଇସା ମାଠିବେ ।

ନୟନ ଦୁଇଟି ତାର ଦୀପ୍ତ ଥିଲା । ରୁକ୍ଷ କେଶଗୁଚ୍ଛ ପବନରେ ଦୋହଲୁଥିଲା । ହୁଏତ ତାକୁ ଅସ୍ୱୀକାର କରିବାକୁ ଏ ପୃଥିବୀରେ ଅନେକ ଅଛନ୍ତି, ରହିଥିବେ ।

କିନ୍ତୁ ଏ ଯେଉଁ ପଟ୍ଟଭୂମି ଉପରେ ସେ ଠିଆ ହୋଇଛି– ଦାୟିତ୍ୱ ନେଇ ଠିଆ ହୋଇଛି ଜଳି ଜଳି– ଏ ଜ୍ୱଳନ ହିଁ ତାର ପାଥେୟ । ବଞ୍ଚିବାର ଏକମାତ୍ର ଐକାନ୍ତିକ କାମନା ।

ହଜାର ହଜାର କୋଟି କୋଟି ଲୋକ ପୃଥିବୀରେ ବଞ୍ଚୁଛନ୍ତି । ନିଖିଳେଶ ମଧ୍ୟ ତାଙ୍କ ଭିତରୁ ଜଣେ । ତା ଜୀବନର ସୁଖସମ୍ଭୋଗ ସେ ନିଜେ ହରେଇଛି– ଏହା

ସାଧାରଣ ଲୋକ କହିବେ । ଯେଉଁମାନେ ବାହାବା ଦେବେ ତାକୁ ସାହାଯ୍ୟ କରିନାହାନ୍ତି, ସେମାନେ ହୁଏତ ତାର ଆଦର୍ଶରେ ଅନୁପ୍ରାଣିତ ହୋଇଥିବେ ।

କିନ୍ତୁ ଏ ଜୀବନ କଣ ନମସ୍ୟ– ଧୂଆଁର କୁଣ୍ଡଳି ରଚି ରେଳଗାଡ଼ି ପୃଥିବୀର ବକ୍ଷଚିରି ଆଗେଇ ଯାଉଛି ।

ପ୍ଲାଟଫର୍ମ ଉପରେ ଶ୍ରୀମତୀ ମଣିବାଳା ମହାନ୍ତି ଶୁଖିଲା ଆଖିରେ ଦେଖୁଛି ଅଦୃଶ୍ୟ ହୋଇଯାଉଛି ରେଳଗାଡ଼ି । ଦେହପ୍ରାଣ ମୂର୍ଚ୍ଛହୋଇ ଉଠୁଛି । ଜୀବନର ଏତେ କେତେଦିନ ବିତିଗଲା ଏହିପରି– ଅଦୃଶ୍ୟରେ ହିଁ ତ ଆନନ୍ଦ । ଦୃଶ୍ୟରେ ତ ସବୁବେଳେ ଅଚିହ୍ନା– ଅଜଣା ।

ସେ ଅନୁଭବ କରୁଛି ତାର ଯୌବନ ନିଭି ନିଭି ଗଲାବେଳେ ଆଉ ଏକ ଆଲୋକରେ ସେ ପ୍ରଜ୍ୱଳିତ– ଏଥିରେ କାମନା ନାହିଁ, ବାସନା ନାହିଁ... ମିଳନର ଇଚ୍ଛା ନାହିଁ ।

ଅଛି କେବଳ ବହୁ ଭିତରେ ଗୋଟିଏ ଆଦର୍ଶରେ ନିଜକୁ ବିଲୀନ କରିଦେବା

ଦାୟିତ୍ୱ ବଢ଼ିଛି । ଯୁଗ ଯୁଗରେ ଏହି ଚେତନାଶୀଳ ବ୍ୟକ୍ତି ଅଭାବ ଦାରିଦ୍ର୍ୟରେ ଦିନ କଟାଇ ମରନ୍ତି । ଅଗଣିତ ଜନତା ପରେ ରୋଦନ କରିବ ହୁଏତ, କିନ୍ତୁ ତାର ମୂଲ୍ୟ କ'ଣ ?



# ଶରତବାବୁଙ୍କ ସ୍ତ୍ରୀ

ପୃଥିବୀର ନାରୀ ଜାତି ମଧ୍ୟରେ ଯେ କେହି କେହି ପ୍ରଜ୍ଞାବତୀ ଥାଆନ୍ତି ତାହା ସ୍ୱୀକାର କରିବାକୁ ପଡ଼ିବ । ସେଥିମଧ୍ୟରେ ମୁଁ ଯାହାଙ୍କ କଥା ଉଲ୍ଲେଖ କରୁଛି, ସେଥିରେ ସେ ନମସ୍ୟା ବୋଲି ସାଧାରଣ ଲୋକଙ୍କ କଥାରେ ନ କହିଲେ ମଧ୍ୟ କୁହାଯାଇପାରେ ।

ନାରୀ ଚରିତ୍ର ସମ୍ବନ୍ଧରେ ଯେଉଁମାନେ ଅନୁଧ୍ୟାନ କରିଛନ୍ତି, କରୁଛନ୍ତି, ଜୀବନକୁ ନିଃସଙ୍ଗ ରଖି ଏହି ପୁରୁଷ ସ୍ତ୍ରୀର ଏକତ୍ରୀକରଣକୁ ଅପରାଧ ବୋଲି ମଣୁଛନ୍ତି, ତାଙ୍କ ଉତ୍ତର ନିମିତ୍ତ ମଧ୍ୟ ଏକ ପ୍ରଶସ୍ତ କ୍ଷେତ୍ର ରହିଛି– ସେ ଶରତବାବୁଙ୍କ ସ୍ତ୍ରୀ ।

ମୁଁ ସହରକୁ ଆସିବାର ପନ୍ଦର ମିନିଟ୍ ପରେ, ଆସିବା ଖବର ସେ ପାଇଥିଲେ ବୋଲି କହୁଥିବାର ଲୋକେ ଶୁଣିଛନ୍ତି । ଏହାଛଡ଼ା ମୁଁ କୁଆଡ଼େ ଡଗର ପତ୍ରିକାରେ ଲେଖାଲେଖି କରେ, ସେ ପ୍ରଚାର କରୁଥିଲେ ଆଗରୁ । ମୁଁ ଏ ସହରକୁ ବଦଳି ହୋଇ ଆସିବା ଆଗରୁ ସେ କୁଆଡ଼େ ଘରିଆଡ଼େ କହିଥିଲେ ଯେ ମୁଁ ତାଙ୍କ ଘରେ ରହିବି । ତା'ଛଡ଼ା ତାଙ୍କ ଘରେ ନ ହେଲେ ଆଉ କେଉଁଠି ବା ଖାଆନ୍ତି ?

ମୋର ବିଛଣାପତ୍ର ସବୁ ମୋତେ ଦିଆଯାଇଥିବା ସରକାରୀ କ୍ୱାର୍ଟର୍ସରେ ବିଛାଇ ଦେଲାପରେ ପିଅନ ଟୋକା କହିଲା, "ଆଜ୍ଞା, ଖିଆପିଆ ତ ସଇଲା; ଶରତବାବୁଙ୍କ ସ୍ତ୍ରୀ ତ କହିଯାଇଥିଲେ ତାଙ୍କ ଘରେ ଶୋଇ" ମୁଁ ପ୍ରଥମ ଥର ପାଇଁ ପିଅନକୁ କ୍ଷମା ଦେଇଥିଲି ସେ ଦିନ ଏବଂ ନିଜ କୋଠରିରେ ଶୋଇ ଶୋଇ ଭାବୁଥିଲି ଏ ଶରତବାବୁଙ୍କ ସ୍ତ୍ରୀ କିଏ ? ମୋର ତ କାହିଁ କିଛି ସମ୍ବନ୍ଧ ଥିଲାପରି ଜଣାପଡୁନାହିଁ । ମନେହେଲା, ସମ୍ରାଟ ପଞ୍ଚମ ଜର୍ଜଙ୍କୁ ମାମୁ କି ମଉସା କରିଦେବାଟା କ'ଣ ବଡ଼ କଥା ଆଉ !

ମୋର ପନ୍ଦର ଦିନ ଗସ୍ତ ପରେ ମୋର ଉପରିସ୍ଥ ହାକିମ କହିଲେ– "ହଇ ହେ, ତମେ ସ୍ୱାସ୍ଥ୍ୟ ପ୍ରତି ନଜର ଦେଉ ନା, ସ୍ୱାସ୍ଥ୍ୟ ଖରାପ ହୋଇଯିବ । ଏ ଜାଗାକୁ ଘରିଁ ଚଳ । ତମ ଦିହ ଖରାପ ହେବ, ଆଉ ମୁଁ ତୁଚ୍ଛାଟା ଗାଳି ଶୁଣିବି କାହିଁକି ?"

ଆଶ୍ଚର୍ଯ୍ୟ ହେଲି– "ନାଇଁ ଆଜ୍ଞା, ଆପଣ ମୋ ଗାଳିଗୁଡ଼ାକ କାହିଁକି ମୁଣ୍ଡାଇବେ ?"

"ତେବେ ତମେ କାହିଁକି ମୋ ପାଖକୁ ତମ ଭଉଣୀକୁ ପଠଉଚ ରାତି ଅଧଟାରେ ବିରକ୍ତ କରିବାକୁ । ସେ ବିଚରା ଭଦ୍ରମହିଳା; ସେ ଭାରି ବ୍ୟସ୍ତ । ତମ ଲାଗି ତାଙ୍କର ନିଦ ନାହିଁ । ତମେ ଦୟାକରି ତମର ଟ୍ୟୁର୍ ବଦଳାଇ ଦିଅ । ଗୋଟାଏ କାମ କର । ଭଉଣୀଙ୍କ କଥା ମାନ । ଭଦ୍ରମହିଳା ବଡ଼ ନିପୁଣା ମନେହେଲେ– କିନ୍ତୁ..."

"ଭଦ୍ରମହିଳା– ରାତି ଅଧ– ମୋ ଭଉଣୀ ?" କହିଲି– "କିଏ ଆଜ୍ଞା, ମୋର ତ କେହି ଭଉଣୀ ନାହିଁ ଏଠି ?"

"ଏଇ ତମର ଶରତବାବୁଙ୍କ ସ୍ତ୍ରୀ ?"

ମୁଁ ଆଖିବୁଜି ପକାଇଲି । ହେ ଭଗବାନ୍ ! ଶେଷରେ ଏଇଆ ହେଲା ?– ଶରତବାବୁଙ୍କ ସ୍ତ୍ରୀ ! କିଏ ସେ ଅଖ୍ୟାତ ଶରତବାବୁ– କିଏ ସେ ତାଙ୍କର ସ୍ତ୍ରୀ ! ! ସେ ପୁଣି ମୋ ଭଉଣୀ କିପରି ହେଲେ ? ଏହିପରି କିଛିଦିନ ବିତିଗଲା । ଶରତବାବୁଙ୍କ ସ୍ତ୍ରୀଙ୍କ ଗଳି କେଉଁଟା ଜାଣିସାରିବା ପରେ ଏ ସହରକୁ ଆସିବାର ୫ମାସ କଟିଗଲା, ସେ ଗଳିରେ ଯାଇନାହିଁ । ନାମ ଶୁଣିବା ମାତ୍ରେ ସାଇକେଲ ପାଡ଼େଲରେ ଜୋର କଷିଛି । ଆଉ ତାଙ୍କର ଯେଉଁଠି ଉପସ୍ଥିତ ଆଶଙ୍କା କରିଛି ମୁଁ ସାରାଦିନ ଉପବାସ ରହିଛି ପଛେ ବାହାରକୁ ଆସି ନାହିଁ ।

ଦୋକାନ, ବଜାର, ପାନଦୋକାନ, ଭଣ୍ଡାରି, ଗୁଡ଼ାଖୁ ଦୋକାନ, ଅତର ଦୋକାନ, ଫୁଲ ଦୋକାନ, ମନୋହରି ଦୋକାନ, ଶାଢ଼ି ଦୋକାନ, ବ୍ଲାଉଜ୍, ବଡ଼ିସ୍ ଦୋକାନ, ସବୁଠାରେ ଶୁଣି ଅତାନ ହେଇଗଲି ଯେ 'ମୁଁ ଶରତବାବୁ ସ୍ତ୍ରୀଙ୍କ ଭାଇ ! !'

ଶେଷରେ ମେହେନ୍ତରାଣୀ ପର୍ଯ୍ୟନ୍ତ ସୁନିଅଁ ପର୍ବରେ ମାଗିବାକୁ ଆସିଲେ– ଶରତବାବୁ ସ୍ତ୍ରୀଙ୍କର ଭାଇ ବୋଲି ମୋ ପାଖକୁ । ମୁଁ ପ୍ରଥମେ ସେମାନଙ୍କୁ ବିଦା କରି ଦେଉଥିଲି । ଥରେ ଦେଲାପରେ ସେଇଟା ତାଙ୍କର ଦାବି ବୋଲି ମଧ ସେମାନେ ବୁଝି ପ୍ରତି ରବିବାର ଆସିବାକୁ ମଧ ଲାଗିଲେ ।

ଶାଢ଼ି ଦୋକାନ, ବ୍ଲାଉଜ୍ ଦୋକାନ, ଅତର ଦୋକାନ, ଗୁଡ଼ାଖୁ ଦୋକାନବାଲାମାନେ ମଧ ତାଙ୍କ ବାର୍ଷିକ ପୂଜାରେ ନିମନ୍ତ୍ରଣ ଦେବାକୁ ଲାଗିଲେ । ଆଉ ଶେଷରେ ଶରତବାବୁଙ୍କ ସ୍ତ୍ରୀ ତରଫରୁ ହୋଇ କହିଲେ– ତାଙ୍କୁ ଟଙ୍କା ନିଅଣ୍ଟ ପଡୁଛି, ଆପଣ ଦିଅନ୍ତୁ ।

ଏ ନାଉର ଗତିରେ ମୁଁ ପୂରାପୂରି ମନା କରିଦେଲି ଯେ ସେ ମୋର କେହି ନୁହନ୍ତି । ସେମାନେ କିନ୍ତୁ ନଛୋଡ଼ବନ୍ଧା । ଶେଷରେ କଳିଗୋଳ ହେବାର ଆଶଙ୍କା କରି କହିଲି, ସେ ଲେଖିଦିଅନ୍ତୁ ସବୁ ସମାଧାନ ହେବ ।

ଭାଗ୍ୟକୁ ସେମାନେ ସିନା ଚାଲିଗଲେ; ହେଲେ ପିଅନଟାକୁ କହିଲି, କେହି ଯଦି ଭାଇ ବୋଲି କହି ଏ ଘରକୁ ପଶେ, ତେବେ ତୁ ଜାଣୁ କି ତୋ ଚାକିରି ଜାଣେ !

ମୁଁ ଆଶ୍ଚର୍ଯ୍ୟ ହେଲି । ଏଯାଏଁ ତ ସେ ସ୍ତ୍ରୀଲୋକଟାର ମୁହଁ ମଧ୍ୟ ପରିଷ୍କାର କରି ଦେଖିପାରିନି, କଥା ଦୁଇପଦ ବି କହିପାରିନାହିଁ । ଅଥଚ...

ହଠାତ୍ ଦିନେ ମୋ ଅପା ତା' ପୁଅ ବୁଢ଼ାକୁ ନେଇ ହାଜର ।

ମୁଁ ଯାଇଥାଏ ଟୁର୍ । ପିଅନ ଟୋକା ବଇରାଗିଆ ପଚାରିଲା କଣ ହୋ'ନ୍ତି କି ବାବୁ ଆମର ? ଅପା କହିଲା– ଭାଇ । ବଇରାଗିଆ ଗୋଟାଏ ବଡ଼ କୋଳପ ପକାଇ ଦେଇ ମାର୍ ଛୁ– ବାବୁଙ୍କର କେହି ଭଉଣୀ ନାହାନ୍ତି ହୋ । ଗୋଟାଏ ପେଖନା ଚଳେଇଛ ତୁମେ । କଣ ବାବୁଙ୍କ ଧନକୁ ଲୁଟି ଖାଇବ– ଭାଇ ଭାଇ କହି ?

ଅପା ପୁଅ ବୁଢ଼ାଟା ବେଶ୍ ଧୂର୍ତ୍ତ । ତା' ଜୋତା ବାହାରକଲା ବେଳକୁ ଭାଗ୍ୟବାନ ବଇରାଗିଆ ଖଣ୍ଡେ ଦୂର ଚାଲିଯାଇଥିଲା ।

ମୁଁ ଟୁର୍‌ରୁ ଆସି ଦେଖେଁ ଅପା ସେଇ ଗାଡ଼ିରେ ତା' ଘରକୁ ଫେରିଯାଇଛି ।

କୁଆଡ଼େ କିଛି ଭାବିପାରିଲି ନାହିଁ ।

ବୋଉ ମୋର ଚିଠି ଲେଖିଲା– ମୁଁ ଶୁଣୁଛି ତୋର ଦେହ ବ୍ୟସ୍ତ ହେଉଛି । ଦେହକୁ ଯତ୍ନରେ ରଖିବୁ । ଶରତବାବୁଙ୍କ ସ୍ତ୍ରୀ ଲେଖିଛନ୍ତି ସେ ଏଥର ଖୁବ୍ ଯତ୍ନରେ ତୋର ସ୍ୱାସ୍ଥ୍ୟ ଫେରାଇ ଆଣିଛନ୍ତି ।

ମୁଁ ଆଉ କିଛି କହିପାରିଲି ନାହିଁ । ଅପା ଲେଖିଛି– ଶରତବାବୁଙ୍କ ସ୍ତ୍ରୀ ଲେଖିଛନ୍ତି ତୁ କୁଆଡ଼େ ଚରିତ୍ରହୀନ ହେଲୁଣି । ତୋର ବିବାହ ଏକାନ୍ତ ଦରକାର । ସୁରେଶବାବୁଙ୍କ ଝିଅ ପ୍ରୀତା ସାଙ୍ଗରେ ଖୁବ୍ ବୁଲାଚଲା କରୁଛୁ । ତୁ ଶୀଘ୍ର ଘରକୁ ଯାଇ ବନ୍ଦୋବସ୍ତ କରି ପକା ।

ମୁଁ ଚିଠିଟି ପାଇ ଆଶ୍ଚର୍ଯ୍ୟ ହେଲି । ପ୍ରୀତା ବା କିଏ ? ବୁଲାଚଲାର ଅର୍ଥ କ'ଣ ? ମୁଁ ରାଗରେ ନିଜେ ପାଚିଗଲି ଏବଂ ଏହାର ଯଥାଯଥ ପ୍ରତିଶୋଧ ଟିକକ ନେବାକୁ ମଧ୍ୟ ତିଆର ହେବାକୁ ବସିଲି ।

ପୁଣି ଏକ ରଙ୍ଗିନ ଚିଠିରେ ଆସିଲା– "ପ୍ରିୟ ହେ, ଶରତବାବୁଙ୍କ ସ୍ତ୍ରୀଠାରୁ ଜାଣିଲି ତମେ ମୋତେ ଭଲପାଇ ବସିଚ । ତମ ଛଡ଼ା ମୋତେ କିଛି ଦିଶୁ ନାହିଁ । ତମେ ମୋତେ କେଉଁଠି ଦେଖିଲ ? ତେନ୍ତୁଳି ଘାଟରେ ନା ରାମେଶ୍ୱରରେ– ମନେ ପଡୁଛି ? ଛି, ମୁଁ ପାଗଳୀ, ଟିକିଏ ରହିଁ ଦେଇଥାନ୍ତି କି ? ତମକୁ ଦେଖିଥିଲି ସିନେମାରେ । ସିନେମା ଭିତରେ ନୁହେଁ, ପରିସ୍ରାଖାନାକୁ ମୁହଁ କରି ତମେ ଠିଆ ହୋଇଥିଲାବେଳେ ପଛରୁ ଦେଖିଛି । ଶରତବାବୁଙ୍କ ସ୍ତ୍ରୀ ପଛରୁ ଦେଖାଇ ଦେଇଥିଲେ ।

ତମର
ପ୍ରେମିକା
ଆଦରମଣି ।"

ପୁଣି ଆଉ ଏକ ଚିଠିରେ ଗୀତା, ପୁଣି ଆଉ ଏକ ଚିଠିରେ ଲତା । ଆଉ ସେଇ ଶରତବାବୁ ସ୍ତ୍ରୀଙ୍କ ଭୂମିକା ।

ଶେଷରେ ମୁଁ ଚିଠିଗୁଡ଼ିକ ରଖି ଏହି ପ୍ରେମ ମୁଦ୍ରିତ ଅକ୍ଷରଗୁଡ଼ିକରୁ ଭରିଏ କରି ଓଜନ କରୁଥିଲି ସୁନା ନିକିତିରେ ।

ହଠାତ୍ ଏକ ଟେଲିଗ୍ରାମ ଆସିଲା । ଘରେ ଯାଇ ବାହାଘର ସରିଗଲା । ମୋର ସ୍ତ୍ରୀକୁ ନେଇ ସହରକୁ ଫେରିଲି । ଆଉ ସେହିଦିନଠାରୁ ଶରତବାବୁଙ୍କ ସ୍ତ୍ରୀଙ୍କ କଥା ଶୁଣିନାହିଁ କି କେହି ଭାଇ ବୋଲି ସ୍ୱୀକାର କରିନାହାନ୍ତି ।

ମୋ ସ୍ତ୍ରୀଙ୍କ ସାକ୍ଷାତରେ ସେ କହିଲେ ଯେ 'କାଇଁ ତ ମୁଁ ତାଙ୍କୁ ଚିହ୍ନେ ନାହିଁ– ଜାଣେ ନାହିଁ' ବୋଲି ।



# ଝଡ଼ ଓ ଦୁଇଟି ବିତ୍ରସ୍ତ ପାଖୁଡ଼ା

ଗତକାଲି ଜଜ୍‌ଙ୍କ ଇଜଲାସ୍‌ରେ ଫାଦର ଆଲବର୍ଟଙ୍କର ଗୁଳିରେ ମୃତ୍ୟୁକାଣ୍ଡର ବିଚାର ହୋଇଥିଲା । ପଚିଶଲିଶ ବର୍ଷର ସିଷ୍ଟର ବାର୍ଥା ସ୍ୱୀକାର କରିଥିଲେ ଯେ ରିଭଲଭର୍‌ରେ ଗୁଳିକରି ଫାଦରଙ୍କୁ ମାରିଛନ୍ତି । ସେ ଏହାର କାରଣରେ କହିଲେ ଯେ "ଫାଦର୍ ମୋତେ ମୋର ମାତୃତ୍ୱର ଦାବିରୁ କ୍ଷାନ୍ତ କରିବାକୁ ଯେଉଁ ହୀନ ଚେଷ୍ଟା କରିଛନ୍ତି ସେ ଦୃଷ୍ଟିରୁ ତାଙ୍କୁ ଏ ଶାସ୍ତି ସାମାନ୍ୟ । ଯେଉଁମାନେ ମଣିଷ ପ୍ରକୃତି ଉପରେ ଆଦର୍ଶର ଚପଦେଇ ଆମକୁ ହତ୍ୟା କରିବାକୁ ଚାହାନ୍ତି– ମଣିଷ ସମାଜ ଭିତରେ ଏକ ଶାଖା ସୃଷ୍ଟି କରି ସେମାନଙ୍କୁ ସମାଜର ଅବହେଳିତ ବାରାଙ୍ଗନା ବୋଲି କହନ୍ତି ସେ ସମାଜ, ସମାଜ ନୁହେଁ । ସେ ଆଦର୍ଶ, ଆଦର୍ଶ ନୁହେଁ । ସେଥିରେ ହଜାର ଆଦର୍ଶବାଦୀ ମରନ୍ତୁ– ଗୁଳି କରାଯାନ୍ତୁ ପଛେ ମଣିଷ ମନର ସମାଜ ହେଉ । ସେ ବଞ୍ଚିବାର ଖୋରାକ ପାଉ– ଏ ଫମ୍ପା ଆଦର୍ଶରେ ପ୍ରୟୋଜନ କଣ ?" ଏହା କହୁଁ କହୁଁ ବାର୍ଥା ଇଜଲାସ୍‌ରେ ପାଗଳ ହୋଇଯାଇଛନ୍ତି । ଡାକ୍ତର ପରୀକ୍ଷା କରି ଜଣାଇଛନ୍ତି ଯେ ବାର୍ଥାଙ୍କର ଏହି ପାଗଳ ହେବାର ପଛରେ ଏକ ରୁଦ୍ଧ ବେଦନାର ଇତିହାସ ରହିଛି, ସୁତରାଂ ମନେହେଉନାହିଁ ଯେ ଏ ପାଗଳାମି ତାଙ୍କର ଶୀଘ୍ର ଭଲ ହେବ ।

ଶ୍ରୀମନ୍ତ ସମ୍ବାଦଟିରେ ବେଶ୍ ବିଚଳିତ ହୋଇ ଉଠିଲା । ଥରକୁଥର ଏହି ସମ୍ବାଦଟିକୁ ପଢ଼ିବାକୁ ଲାଗିଲା । ସେ ସମ୍ବାଦପତ୍ର ଅଫିସକୁ ଫୋନ କରି ବୁଝିନେଲା ନିଜ ପ୍ରତିନିଧିଟି ତାଙ୍କର କିଏ । ତା' ପରେ ତାଙ୍କ ପ୍ରତିନିଧିଙ୍କ ସହିତ କଥାବାର୍ତ୍ତା ହେଲା । ଶ୍ରୀମନ୍ତ ନିଶ୍ଚୟ କରିନେଲା ଏହି ସେହି ବାର୍ଥା ପାଟଣାଣୀ ଯାହାର କଥାସ୍ମୃତି ଏବେ ମଧ୍ୟ ମନ ଭିତରେ ଢେଉ ଖେଳୁଛି । ସେ ଫୋନ୍ କରି ମୋତେ ଡକାଇଲା । ମୁଁ ଯେତେବେଳେ ଶ୍ରୀମନ୍ତକୁ ଦେଖେ ଶ୍ରୀମନ୍ତ ବେଶ୍ ଶୁଷ୍କ ଏବଂ ଗମ୍ଭୀର ଦିଶୁଛି । ମୁହଁଟିରେ ଯେପରି ସରସତା ନାହିଁ ।

ମୁଁ ବସିଲି ତା' ଆଗରେ । ଶ୍ରୀମନ୍ତ କହିଲା– ମୁଁ ଆଜି ପାଟନା ବାହାରିଯିବି ବୋଲି ସ୍ଥିର କରିଛି । କେବେ ଫେରୁଛି ଠିକ୍ ନାହିଁ । ତୁ ଯଦି ମୋ ସାଙ୍ଗରେ ଚାଲନ୍ତୁ

ବେଶ୍ ଭଲ ହୁଅନ୍ତା । କାରଣ ବାର୍ଥା ପାଇଁ ମୋତେ କୋର୍ଟରେ ପ୍ଲିଡ୍ କରିବାକୁ ହେବ । ତା'ଛଡ଼ା ତୁ ଥିଲେ ଅନ୍ୟ କିଛି ପରାମର୍ଶ ନେବାକୁ...

–ବାର୍ଥା କିଏ ପୁଣି ?

ଶ୍ରୀମନ୍ତ ହସିଲା– "ଆରେ, କଥାଟା ନକହି ତେବେ କାମଟା କରିବାକୁ କହିଲି । ତୁ ଜାଣିଛୁ ମନୋରଞ୍ଜନ, ମୁଁ ସେତେବେଳେ ଭାରତକୁ ମାତ୍ର ମାସେ ହେଲା ଆସିଛି । ଲାହୋରଠାରୁ ଉଡ଼ାଜାହାଜରେ ଆସୁ ଆସୁ ଦମ୍‌ଦମ୍‌ରେ ହୁଏ ଏଆରକ୍ରସ । ଅର୍ଦ୍ଧଦଗ୍ଧ ହୋଇ ତଳକୁ ଖସିପଡ଼େ । ମୋର ଦାୟିତ୍ୱ ନିଅନ୍ତି ଆମେରିକା କେଥଲିକ ମିସନାରୀମାନେ । ପାଟନାରେ ତାଙ୍କର ବେଶ୍ ବଡ଼ ହାସ୍‌ପାତାଳ ଥାଏ । ଦାନପୁରର ନିକଟରେ ବିରାଟ ହାସ୍‌ପାତାଳ । ସେଠାରେ ଭର୍ତ୍ତି ହେବାର ସାତଦିନ ପରେ ମୁଁ ବୁଝିପାରେ ଯେ ମୁଁ ବଞ୍ଚିଛି । ତା'ଛଡ଼ା ମୋତେ ବଞ୍ଚାଇବାର ଲକ୍ଷ୍ୟ ଥିଲା ଅନ୍ୟ କାରଣରୁ ମଧ୍ୟ । ମୁଁ ମେଜର ହୋଇ ଏକ ଶାନ୍ତି ସୈନ୍ୟ ଚଳାଇ ନେଇଥିଲି ଇଉରୋପର ଏକ ଦ୍ୱନ୍ଦ୍ୱ ରାଷ୍ଟ୍ରର ସମାଧାନ ଦାୟିତ୍ୱରେ । କାଗଜରେ ମୋର ପ୍ରଶଂସା ହୋଇଥିଲା ଏବଂ ଆନ୍ତର୍ଜାତିକ ମିସନାରୀ ସଂସ୍ଥା ମୋତେ ପ୍ରଶଂସାପତ୍ର ଦେଇଥିଲେ । ସବୁଠାରୁ ବିପଦ ହେଲା, ସ୍ୱାଧୀନ ହେବାପରେ ନେତାମାନେ ଚିଠି ଲେଖିଲେ ଯେ ମୋତେ ସେମାନେ ଫେରାଇ ନେଇ ସରକାରୀ ଡାକ୍ତରଖାନାରେ ରଖିବେ । ଫାଦର ଆଲବର୍ଟ କିନ୍ତୁ ଜୋର ଦେଇ କହିଥିଲେ ଯେ– ପ୍ରଭୁଙ୍କ ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ପ୍ରଭୁ ଯୀଶୁ କହିଛନ୍ତି ଯେ ଅତିଥି ଆସିଛି, ତାଙ୍କୁ ସାହାଯ୍ୟ ନକଲେ ବ୍ୟର୍ଥ ସେ– ହତାଶରେ ଫେରାଇ ଦେବା ପ୍ରଭୁଙ୍କ ନିକଟରେ ଦ୍ରୋହୀ ହେବାଛଡ଼ା ଗତ୍ୟନ୍ତର ନାହିଁ ।

ଫାଦର ଆଲବର୍ଟଙ୍କର ବ୍ୟକ୍ତିତ୍ୱ ଏବଂ ତାଙ୍କର ଧର୍ମରେ ପରାକାଷ୍ଠା ଏବଂ ନିଷ୍ଠାକୁ ବିଶ୍ୱାସ କରି ମୋର ଦାୟିତ୍ୱ ତାଙ୍କ ଉପରେ ଛାଡ଼ି ଦିଆ ହୋଇଥିଲା । ସେତେବେଳେ ଭାରତୀୟ ପ୍ରେସ୍ ସମ୍ବାଦପତ୍ରମାନ ମୋ ସମ୍ପର୍କରେ ଚିତ୍କାର କରିଥିଲେ । କହୁଥିଲେ ସେ ଜଣେ ସୁଦକ୍ଷ ଲୋକ, ଯଦି ତାଙ୍କୁ ସେଠାରେ ଛାଡ଼ି ଦିଆଯାଏ ତାଙ୍କୁ ମାରି ଦିଆଯିବ । ମୋ ନିକଟରେ ଫାଦର ଆସି ସବୁକଥା ପଢ଼ନ୍ତି ଏକଥା ଦୁଃଖକରି ମଧ୍ୟ କହନ୍ତି । ହାସପାତାଳର ସମସ୍ତ ଡାକ୍ତର ଡାକ୍ତରାଣୀ ନର୍ସ ସିଷ୍ଟର ଏପରିକି ରୋଗୀ ଯୀଶୁଧର୍ମୀ ଥିଲାବେଳେ ମୁଁ ଥିଲି ଗୋଟିଏ ହିନ୍ଦୁ । ଫାଦରଙ୍କ ଏପରି ପରିଚାଳନାରେ–

ମୋତେ ରଖିବାରେ ଅନେକ କ୍ଷୁଣ୍ଣ ଥିଲେ ଏକଥା ମୁଁ ଲକ୍ଷ୍ୟ କରିଛି । କିନ୍ତୁ ମୋ ପ୍ରତି ଯେଉଁ ଧ୍ୟାନ ଦିଆହେଉଥିଲା ସେ କଥା ମୁଁ ଆଉ କେଉଁଠି ପାଇ ନଥାନ୍ତି ନିଶ୍ଚୟ ।

ସେ ଅଞ୍ଚଳରେ ଫାଦର ଆଲବର୍ଟ ଥିଲେ ବେଶ୍ ପ୍ରତିଷ୍ଠାବାନ ବ୍ୟକ୍ତି । ଆଦର୍ଶ ଏବଂ ଚରିତ୍ର କଥା ସେ ସବୁବେଳେ କହୁଥିଲେ । ହିନ୍ଦୁ ପରିବାରମାନଙ୍କରେ ଘନିଷ୍ଠତା ଥିଲା । ଯେ କୌଣସି ଘଟଣା ଅଘଟଣାରେ ଫାଦରଙ୍କ ପରାମର୍ଶ ସେମାନେ ଲୋଡୁଥିଲେ । ତେବେ ଯେଉଁମାନେ ଆସକ୍ତ ବା ଅନାସକ୍ତ ହୋଇ ଏହି ହସ୍‌ପିଟାଲ ଆସୁଥିଲେ ସେମାନେ କ୍ରମଶଃ ଯୀଶୁଧର୍ମରେ ଦୀକ୍ଷିତ ହେଉଥିଲେ । ପୁରୁଷ ଆସିଲେ ସେବିକାମାନଙ୍କର ସ୍ୱାମୀ ଏବଂ ସ୍ତ୍ରୀ ହେଲେ ସେବିକା ଓ ସ୍ତ୍ରୀ ହେଉଥିଲେ ବୋଲି ଡରଭୟ ଥିଲା । ବହୁ ସମୟରେ ଖୁବ୍ ଅଳ୍ପ ରୋଗୀ ରହୁଥିଲେ । ଦେଖାଶୁଣା ବେଶ୍ ଭଲ ମଧ୍ୟ ହେଉଥିଲା ।

ସବୁଠାରୁ ବିରକ୍ତିକର ପରିସ୍ଥିତି ଥିଲା ସକାଳଟା । ଘରର ଦରଜା ଝରକାଗୁଡ଼ିକ ଖୋଲିଦିଆ ହେଉଥିଲା ଏବଂ ଆରମ୍ଭ ହେଉଥିଲା ଅଧଘଣ୍ଟା ଧରି ପ୍ରାର୍ଥନା । ବଡ଼ ବିରକ୍ତିକର ହେଉଥିଲା ପରିସ୍ଥିତି । ଭଗବାନଙ୍କ ଉପରେ ଭୟଙ୍କର ଘୃଣା ଜନ୍ମୁଥିଲା । କିଏ କିଏ ରୋଗୀ ଚିତ୍କାର କରୁଥିଲେ– ବନ୍ଦକର, ବନ୍ଦକର । ଆଉ ସେମାନଙ୍କର ଦୃଷ୍ଟି ଆକର୍ଷଣ ପାଇଁ ବୋତଲ ପ୍ଲେଟ୍ ତଳକୁ ଫିଙ୍ଗୁଥିଲେ । ନର୍ସମାନେ ଧମକ ସ୍ୱରରେ କହୁଥିଲେ– କଣ ହୋଇଛି ? କଣ ହେଉଛି ? ବିଧର୍ମୀଗୁଡ଼ାକ ? ତୁମେ ବୁଝିପାରୁନା ତମମାନଙ୍କ ପାଇଁ ଆମେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛୁ । ତମେ କିପରି ଭଲ ହୋଇଯିବ । ଭଗବାନଙ୍କର ଆଶୀର୍ବାଦ ତମରି ଉପରେ ଯେପରି ପଡ୍ତୁ, ସେଇଥିପାଇଁ ଆମେ ଖୋଲା ରଖିଛୁ ।

ଠକ୍‌ଠାକ୍ ହାଇହିଲ ଶବ୍ଦ ଲୁଚିଯିବା ସଙ୍ଗେ ସଙ୍ଗେ ଫେର୍ ଆରମ୍ଭ ହୁଏ ସେହି ଗଣ୍ଡଗୋଳ ।

ମୋତେ ଗୋଟିଏ ସ୍ୱତନ୍ତ୍ର କୋଠରି ଦିଆଯାଇଥିଲା । ଡାକ୍ତର ଘଣ୍ଟା ପରେ ଘଣ୍ଟା ମୋତେ ତଦାରଖ କରୁଥିଲେ । ତା'ଛଡ଼ା ପ୍ରଥମ ଦିନ ଫାଦର ଆଲବର୍ଟ ଜଣେ ବର୍ଷୀୟସୀ ମହିଳାଙ୍କୁ ନେଇ ମୋ ପାଖକୁ ଆସି କହିଲେ, ଇଯେ ମୋର ଅତି ଆଦରର

କନ୍ୟା ବାର୍ଥା । ତମର ସମ୍ପୂର୍ଣ୍ଣ ଭାର ତା' ଉପରେ ଛାଡ଼ିଦେଇ ମୁଁ ଯାଉଛି । ପ୍ରଭୁ ଯୀଶୁ ଆମକୁ ସାହାଯ୍ୟ କରିବେ ।

ମିସ୍ ବାର୍ଥାଙ୍କ କଥାବାର୍ତ୍ତାରୁ ଜଣାଗଲା ସେ ବେଶ୍ ଗମ୍ଭୀର ଏବଂ ବେଳେବେଳେ ଖୁବ୍ କଥା କହନ୍ତି । ବୟସ ପଇଁଚାଳିଶ ଭିତରେ । ଯୌବନ ନିଶ୍ଚିହ୍ନ ହୋଇନାହିଁ । ସୁନ୍ଦରୀ ଏବଂ ମିଷ୍ଟଭାଷୀ । ବାର୍ଥା ପାଟଶାଣୀ କହନ୍ତି ତାଙ୍କର ହିନ୍ଦୁ ପରିବାରରେ ଜନ୍ମ କିନ୍ତୁ ଏପରି କୌଣସି ପରିସ୍ଥିତିରେ ଶୈଶବରୁ ସେ ଫାଦରଙ୍କ ଆଶ୍ରୟରେ ବଢ଼ିଛନ୍ତି । ଫାଦର କଥା କହିଲାବେଳେ ମିସ୍ ବାର୍ଥା ଆଖିବୁଜି ଛାତିରେ କ୍ରୁଶ୍ ଆଙ୍କନ୍ତି । କହନ୍ତି– ଫାଦର ଖୁବ୍ ଉଚ୍ଚରେ । ମନୁଷ୍ୟର ଖୁବ୍ ଉଚ୍ଚରେ ଈଶ୍ୱର ନିକଟରେ ।

ମିସ୍ ବାର୍ଥା ଦିନେ ଦିନେ ଅସ୍ୱାଭାବିକ ଗମ୍ଭୀର ହେବା ଦେଖାଯାଏ । ସେଦିନ ଆଖି ଛଳ ଛଳ । ବାଷ୍ପାକୁଳ କଣ୍ଠ ଦେଖି ପାଖକୁ ଡାକେ । ସେ ବସନ୍ତି । ମୁଁ ପ୍ରଶଂସା କରେ– ମିସ୍ ବାର୍ଥା, ତମର ଯେଉଁ ସେବା ଆଦର୍ଶ ତମେ କେବଳ ମା ହେବାର ଉପଯୋଗୀ । ମିସ୍ ବାର୍ଥା ଗମ୍ଭୀର ହୋଇଯାଏ– ମୋର ତୋଷାମଦି ତାକୁ ଆହୁରି କଠୋର କରିଦିଏ । ସେ କହିପାରେନା ସତ କିନ୍ତୁ ଆଖିପତା ଫୁଲିଯାଏ– ମୁହଁ ରଙ୍ଗା ହୋଇପଡ଼େ । ଏଇ ରୋଗୀ ପୁରୁଷଗୁଡ଼ାଙ୍କୁ ସେ ଦେଖେ ଏକ କ୍ଲୀବ ଦୃଷ୍ଟିରେ । ମା-ମା ଡାକି ସେମାନେ ସନ୍ତୋଷ ଦେଲେ ସତ କିନ୍ତୁ ମିସ୍ ବାର୍ଥା ପାଟଶାଣୀ ଯେ ପଇଁଚାଳିଶ ବର୍ଷଧରି ବ୍ୟର୍ଥ ହା-ହୁତାଶରେ ଅଭିନୟ କରୁଛି, ଏ ଚିନ୍ତା ତାକୁ ପ୍ରାଣାନ୍ତକ କଲାଣି, କିଏ ବୁଝୁଛି ?

ସେଦିନ ମୋର ଟେମ୍ପରେଚର ବଢ଼ିଥାଏ । ମୁଁ ଜଡ଼ ହୋଇପଡ଼ିଛି । ପାଖରେ ବସିଛି ବାର୍ଥା । ବର୍ଷା ଝରିପଡୁଛି ଆକାଶରୁ । ଦେବଦାରୁ ମୁଣ୍ଡ ହଲାଇ ଶବ୍ଦ କରୁଛି । ଝାଉଁଗଛରୁ ଶବ୍ଦ ଆସୁଛି ସୁ-ସୁ ।

ମୋର ମଥା ଉପରେ ହାତରଖି ବାର୍ଥା କହୁଛି, ଏ ପୃଥିବୀରେ କିଏ ଅଛି ? ତା'ର ଜୀବନରେ ପ୍ରେମ କାହିଁ ? ସୁଖ ବା କାହିଁ ? କାହିଁ ? ଅଭିନୟ କରୁ କରୁ ମଧ୍ୟ ବେଦନା ଜାଗିଉଠେ । ମାତୃତ୍ୱ ଲୋଡ଼ା । ମାତୃତ୍ୱ ନହେଲେ ଗୋଟାଏ ନାରୀ ବଞ୍ଚିବ କିପରି ? ଜ୍ୱରର ଉତ୍ତେଜନା ଥିଲା । ସେ ତାର ମୁହଁଟିକକ ମୋ ପାଖକୁ ଆଣିଲା– ମୁଁ ଓଠରେ ସ୍ପର୍ଶ ନେଲି । ସେ ତାର ସମସ୍ତ ଦିହର ସ୍ପର୍ଶ ଦେଲା ଆଖି ମୁଦି ଦେଇଥିଲା ।

ମୋର ଦ୍ରୁତ ଉନ୍ନତିରେ ଫାଦର ଖୁବ୍ ଆନନ୍ଦିତ ହେଲେ । ତା'ଛଡ଼ା ସେ ବାର୍ଥାକୁ ଦେଖି କହିଲେ– ବାର୍ଥା, ତାକୁ ଏବେ ମେରୀ, ଜୁଲି, ସିଂପସନ ବୋଧହୁଏ ଚିହ୍ନିପାରିବେ ନାହିଁ ।

ମୁଁ କହିଲି– ମିସ୍ ବାର୍ଥା ତମେ ନାରୀ । ତମକୁ ବ୍ୟର୍ଥରେ ଫେରାଇ ଦେବାର ପୁରୁଷର ଅଧିକାର ନାହିଁ । କିନ୍ତୁ ତମେ ତ ବିଶ୍ୱାସ କର ଏହି ଆଦର୍ଶକୁ– ଚରିତ୍ରବାନମାନଙ୍କୁ । ମୁଁ କହି ରଖେ ତମେ କେବେ ଗର୍ଭପାତ କରିବ ନାହିଁ । ଯଦି କିଛି ମନେ ନକର ମୋ'ରି ଘରେ ଶିଶୁଟିକୁ ଛାଡ଼ି ଦେଇଆସିବ । ତମେ ତମର ଜୀବନ ଗଢ଼ିନେବ ।

ବାର୍ଥା ଶୀତରାତିର ଶେଯରେ ଦେହ ଜଡ଼ାଇ କହିଲେ– ଶ୍ରୀମନ୍ତ ମୋତେ ଏସବୁ କହି ପରାସ୍ତ କରିବ ନାହିଁ । ମୁଁ ଜାଣେ ମୁଁ ତମକୁ ଦାବି କଲେ ତମର ସ୍ତ୍ରୀ ସାରା ଜୀବନ ଦୁଃଖରେ କଟାଇବେ । ତମେ ଯାହା କହୁଛ ସେଇଆ ହେବ– ତେବେ ଶିଶୁଟିକୁ ମୋ କୋଳରୁ ନେବନାହିଁ । ଜାଣ ଶ୍ରୀମନ୍ତ, ସେ ମୋର କେତେ ଆଦରର ଧନ ହେବ । କେତେ ଆଶାର କୁସୁମ ହେବ । ସେ ମୋର ପ୍ରାଣର ମୋହନ ହେବ । କଥା ଦିଅ ।

ଯା'ପରେ ମୁଁ ପାଟନାରୁ ଫେରି ଆରମ୍ଭ କରିଦେଲି ଓକିଲାତି । ବାର୍ଥା ଚିଠି ଲେଖେ ସପ୍ତାହରେ ଦୁଇଥର । ଫାଦର ଏକଥା ଜାଣିପାରି ତାକୁ ଡାକିଲେ । ଆଦର୍ଶବାଦୀ ଫାଦର– କହିଲେ ଏହି ଅନୁଷ୍ଠାନର ଆଦର୍ଶ ଘରିଆଡ଼େ ଜଣା । ତା'ଛଡ଼ା ସ୍ୱାଧୀନ ହେଲାପରେ ଖବରକାଗଜଗୁଡ଼ାକ ଟିକିଏ କିଛି ବିଦେଶୀମାନଙ୍କ କଥାରେ ଘରିଆଡ଼େ ହୁରି ପକାଉଛନ୍ତି । ତେଣୁ ଦୁଇଟି ଦିଗ ରହିଛି– ଅନୁଷ୍ଠାନ ଛାଡ଼ିବାକୁ ହେବ, ନଚେତ୍ ଏ କଳଙ୍କକୁ ଲୁଚେଇବାକୁ ହେବ ।

ଶେଷରେ ମିସ୍ ବାର୍ଥା ଅନୁଷ୍ଠାନରୁ ବାହାରି ଯାଇ ଅନତି ଦୂରରେ ରହିଲେ । କିନ୍ତୁ ଥରକୁ ଥର ଫାଦର କହି ପଠାଇଲେ ଯେ ମିସ୍ ବାର୍ଥାକୁ ଗର୍ଭପାତ କରିବାକୁ ହିଁ ପଡ଼ିବ । ଫାଦର ଆସିଲେ । ମିସ୍ ବାର୍ଥା ସ୍ୱଷ୍ଟ କହିଲେ ଯେ ଏହାହିଁ ତେବେ କଣ ଆଦର୍ଶ ? ସେ ବଞ୍ଚିଥିବା ପର୍ଯ୍ୟନ୍ତ ଏକଥା କରିବାକୁ ଦେବେ ନାହିଁ । ସେଇକଥା ହେଲା । କିନ୍ତୁ ଖ୍ରୀଷ୍ଟମାସ ପର୍ବରେ ଫାଦରଙ୍କ କହିବାମତେ ଅଧିକ ମଦ ଖୁଆଇ ଦେଇ ଅନୁଷ୍ଠାନର

ମହତ୍ତ୍ୱ ରକ୍ଷିବାପାଇଁ ଯେଉଁ ବ୍ୟବସ୍ଥା କରିଥିଲେ ଫାଦର– ଆଦର୍ଶର ପ୍ରତୀକ ଜୟୀ ହେଲେ ।

ଜ୍ଞାନ ଫେରି ଆସିଲା ପରେ ମିସ୍ ବାର୍ଥା ଯେତେବେଳେ ଜାଣିପାରିଲା ଯେ ତାର ଏତେବଡ଼ ଆକାଂକ୍ଷାକୁ ନିର୍ମମ ଭାବରେ ହତ୍ୟାକରି ଦିଆହୋଇଛି, ସେ ଈଶ୍ୱର ଆରାଧନା ଛାଡ଼ିଦେଲା– ଆଉ ଫାଦରକୁ ଦେଖା କରିବାକୁ ଇଚ୍ଛା କରି ନଥିଲା– ସେତେବେଳର ଚିଠି କି ବେଦନା ଭିତରେ, କି କରୁଣତା ଭିତରେ ସେ ଯେ ଲେଖିଛି, ତମେ ଭାବିପାରିବ ନାହିଁ ମନୋରଞ୍ଜନ ।

ତା' ପରେ ସେ ହୁଏତ ରିଭଲଭରରୁ ଗୁଳି କରି ଫାଦରକୁ ମାରିଛି ।

"ତେବେ ତୁ ବାହାରିପଡ଼ ପାଟନାକୁ ।"

ମୁଁ ଓ ଶ୍ରୀମନ୍ତ ବାହାରି ପଡ଼ିଲୁ । ବହୁ ଅଧ୍ୟବସାୟ ପରେ ବାର୍ଥା ମୁକ୍ତି ପାଇଲା ଫାଶୀ ଖୁଣ୍ଟରୁ ।

ଶ୍ରୀମନ୍ତ କହିଲା, "ବାର୍ଥା, ଜୀବନକୁ ତୁମେ ବିପନ୍ନ କର ନାହିଁ । ମୁଁ ଆସିଛି ବାର୍ଥା– ମୁଁ ।"

ବାର୍ଥାର ପାଗଳାମି ଟିକିଏ କମିଛି । ସେ ବଲବଲ ଅନଉଛି । ସେକ୍ରେଟାରିଏଟର କ୍ଲକ୍‌ଟାୱାରରୁ ଠଂ ଠଂ ବାଜୁଛି ଘଣ୍ଟା । ବାର୍ଥା ଅନାଇଲା ସେଇଆଡ଼କୁ । ଯେପରି ଜୋର ଘଣ୍ଟା ବାଜୁଛି । ଫାଦର– କହି ଜୋରରେ ପାଟିକରି ମୁହଁ ଢାଙ୍କିଲା ହାତରେ ।

ଶ୍ରୀମନ୍ତ ହାତଧରି ଉଠାଇଲା । ସେ ପଛକୁ ଘୁଞ୍ଚିଯାଇ ପୁଣି ହା-ହା-ହା କହି ପାଗଳ ହସ ହସିଲା । କି ବିରାଟ ଚିତ୍କାର !

ଶ୍ରୀମନ୍ତ ଦୁଇଟି ହାତ ପାପୁଲିରେ ମୁହଁ ଢାଙ୍କିଲା ।



# ଶୂନ୍ୟ କବରୀ

'ବିଜନ ଦେଉଳେ ପଥର ହେଲ କି ନିରିମମ ଭଗବାନ ।'

ଏହି ବସାଘରେ ମୁଁ ପାଞ୍ଚବରଷ କଟାଇ ଦେଇଛି ଏବଂ ଏହି ପାଞ୍ଚ ବରଷ କି ବର୍ଷା, କି ଶୀତ, କି ବସନ୍ତ ପ୍ରତ୍ୟେକ ପ୍ରଭାତରେ ଏହି ଗୀତଟି ପ୍ରତିବେଶିନୀଙ୍କ କଣ୍ଠରୁ ହାରମୋନିୟମ ମିଶା ସ୍ୱରରେ ଶୁଣିଛି । ବିରକ୍ତ ମଧ ଲାଗିଛି ଅନେକ ଥର । କହିଦେବାକୁ ମଧ ଇଚ୍ଛା ହୁଏ । ଶୀତର ପାହାନ୍ତା ଏବଂ ବର୍ଷାର ଶେଷ ରାତିଗୁଡ଼ିକୁ ଏତେ ଅହନ୍ତା ରଖି ମୋର ବିଜନ ମନ୍ଦିରକୁ ଆଉ ନିର୍ମମ ରଖିବା ପ୍ରୟୋଜନ କ'ଣ ?

କିନ୍ତୁ ଠିକ୍ ରହିବାର ଛଅମାସ ପରେ ଜାଣିପାରିଲି ଯେ ଭଦ୍ରଲୋକଙ୍କର ଗୋଟିଏ ଝିଅ, ଖୁବ୍ କାଳୀ ! ଏହି ରଙ୍ଗ କଳା ପାଇଁ ବାପା ତାଙ୍କର ପାଠ ପଢ଼ାଇଲେ ନାହିଁ । ମା' ଅନ୍ୟ କୁଆଡ଼କୁ ବୁଲି ଯିବାବେଳେ ସେ ଝିଅକୁ ବୁଲାଇ ନେବାକୁ ମଧ ରାଜି ନୁହଁନ୍ତି । ପର୍ବ ପୂନେଇଁରେ ଯେତେବେଳେ ବନ୍ଧୁବାନ୍ଧବମାନଙ୍କର ବହୁ ସମାଗମ ହୁଏ ବାପା ମା'ଙ୍କର ଏକ ଗଭୀର ଚିନ୍ତା ହୁଏ ଏହି କାଳୀ ଝିଅଟିକୁ କେଉଁଠାରେ ଲୁଚାଇବେ । ତାଙ୍କର ବୋଧହୁଏ ଭୟ ଏହି କଳା ଝିଅଟିକୁ ଦେଖି ଅନ୍ୟ ପିଲାପିଲିମାନଙ୍କୁ ସେମିତି କଳା ଅସୁନ୍ଦରୀ ବୋଲି ଯଦି କେହି ଭାବି ବସିବେ, ସେଥିପାଇଁ ସେ ଝିଅଟିକୁ କଡ଼ା କଡ଼ା ଶୁଣାଇ ଦିଆ ହୋଇଥାଏ– ସାବଧାନ, ଘରୁ ପାଦେ ଗୋଡ଼ କାଢ଼ିବୁ ନାହିଁ, କହି ଦେଉଛି ।

ସେ ମାଡ଼ ଖାଏ– କିନ୍ତୁ କାନ୍ଦିବାର ମଧ ଶୁଣିନାହିଁ । ବାପାମା'ଙ୍କଠାରୁ ବେଶୀ ଭଗବାନ ବିଶ୍ୱାସୀ । ତେଣୁ ଏହି ଗାଳିଟି ଭଗବାନଙ୍କୁ ଦେବାକୁ ସକାଳୁ ପରାମର୍ଶ ଦେଇଛନ୍ତି ।

ଠିକ୍ ଛଅମାସ ପରେ ମୋର ଆତ୍ମୀୟତା ପଡ଼ୋଶୀଙ୍କ ଘରେ ଖୁବ୍ ବଢ଼ିଯାଇଛି । ଏହି ଅବହେଳିତ କାଳୀ ଝିଅଟିର ଗଢ଼ଣଟି ଖୁବ୍ ସୁନ୍ଦର । ମୁଗୁନି ପଥରରେ କମକରା ଯେପରି ଏକ ସୁନ୍ଦର ପ୍ରତିମୂର୍ତ୍ତି । ଲାସ୍ୟ ଓ ଛଟା ସୁନ୍ଦର, କାନ୍ତ ଏବଂ ସୁଶ୍ରୀ । ଝିଅଟିର ନାମ ସୁକାନ୍ତି ।

ସୁକାନ୍ତିର ମା' ମୋ ଆଗରେ ଏବଂ ସେହି ଝିଅଟିର ଉପସ୍ଥିତିରେ ଆରମ୍ଭ କରିଥିଲା ଏଇ ପୋଡ଼ାମୁହିଁ କାଳୀଟା ମୋ ପେଟରେ କେଉଁଠି ଥିଲା କେଜାଣି ପୁଅ...

ଦେଖିଲି, ସୁକାନ୍ତି ତାର ଷୋହଳ ବରଷର ଯୌବନ ବସନ୍ତରେ ଛାଇ ହୋଇ ମଧ୍ୟ ଏତେବଡ଼ ଅଭିଯୋଗକୁ ଖୁବ୍ ସହଜରେ ନେଉଥିଲା । ମୁଁ ଆରମ୍ଭ କରିଥିଲି– ରଙ୍ଗ କଳାହେଲେ କଣ ହେବ ମାଉସୀ– ଗଢ଼ଣଟି ଯେ ଅଜନ୍ତା ମୂର୍ତ୍ତିଠାରୁ ଆହୁରି ସୁନ୍ଦର, ସାବଲୀଳ, ଛନ୍ଦପୂର୍ଣ୍ଣ– ଏହା କ'ଣ କିଏ ଅସ୍ୱୀକାର କରିପାରିବ ?

ସୁକାନ୍ତି ରୋଷାଇ ଘରକୁ ପଶୁ ପଶୁ ଫେରିପଡ଼ି ମୋ ଆଡ଼କୁ ଚାହିଁଲା । ଯେପରି ସେ ଜୀବନରେ ପ୍ରଥମଥର କଣ ନୂତନ ରାଗରାଗିଣୀ ଶୁଣୁଛି । ତା'ପରେ ଫେରିଗଲା ସେ– ହୁଏତ ଭାବିଥିବ ଏହା ମଧ୍ୟ ଏକପ୍ରକାର ଥଟ୍ଟା– ପରିହାସ । ସେ ତାହାହିଁ ଭାବିଥିଲା ।

ମାଉସୀ କହିଲେ– ଯାହା ହେବାର ହେଉ । ଗୋଟିଏ ଗୋଟିଏ ଗ୍ରହ ମୋର । ଏମାନେ କେବେ ଗଲେ ମୁଁ ଶାନ୍ତି ପାଇବି । ଯଦି କେହି ଜୁଟିଯାଆନ୍ତେ ତା ହାତରେ ସମର୍ପି ଦେଇ ଏହାକୁ ଶାନ୍ତି ପାଆନ୍ତି ।

ମୋ ଘର ସହିତ ସମ୍ବନ୍ଧ ବଢ଼ିବା ସଙ୍ଗେ ସଙ୍ଗେ ଯିବାଆସିବା ଖୁବ୍ ଆରମ୍ଭ ହେଲା ।

ସୁକାନ୍ତି ଯେଉଁଦିନ ଆସିଥିଲା ମୁଁ ତାକୁ ଶୋଇବା ଘରକୁ ଡାକି ନେଇ ଗୋଟିଏ କଣରେ ବସାଇ ତାର ଆଲେଖ୍ୟ ଆଙ୍କିଥିଲି । ତା' ଦେହରେ ଗୌରକାନ୍ତି ନଥିଲେ ମଧ୍ୟ ସୁକାନ୍ତିର ଏକ ଭାବଗତିକ ଛନ୍ଦ ରହିଛି । ସେ ଛନ୍ଦଟି ପ୍ରାଣଛନ୍ଦ । ଯେ କେହି ଭାରତୀୟ ଚିତ୍ରକଳାର ଉପାସକ ନିକଟରେ ସୁକାନ୍ତିର ଗଠନ ଏବଂ ଛନ୍ଦଟି ମୁଗ୍ଧ କରିବ । ମୁଁ ତାର ଚିତ୍ର ଆଙ୍କି ଜନତାର ଦରବାରରେ ପ୍ରଶଂସାପତ୍ର ପାଇଛି । ସୁକାନ୍ତିର ଅନ୍ୟ ଭଉଣୀମାନେ ଯେଉଁମାନେ କାନ୍ତିରେ– ପାଠରେ ଅଗ୍ରଣୀ ସେମାନଙ୍କର ଆଦର ମୋ ନିକଟରେ ବଢୁ– ବହୁବାର ତାଙ୍କ ତୁଷ୍ଟି ପାଇଁ ଆଙ୍କିଛି । କିନ୍ତୁ ଆଙ୍କିସାରି ଝରକା କଡ଼ରେ ପକାଇ ଦେଇଛି । ତାହା ସୁକାନ୍ତି ଆବିଷ୍କାର କରିଛି ।

ଅମାବାସ୍ୟାର କଳାରାତ୍ରି ଘେରି ରହିଥାଏ । ମୁଁ ଏକ ଜରୁରୀ ଅଙ୍କନରେ ବ୍ୟସ୍ତଥାଏ । ପଛରୁ କିଏ ଆସିଲା । ପାଦଶବ୍ଦରୁ ଅନୁମାନ କଲି ।

ପଗ୍ଉରିଲି– କଣ ସୁକାନ୍ତି ଆସିଛ ? ସୁକାନ୍ତି ଏକ ଥାଳି ଭର୍ତ୍ତି ପିଠା ତରକାରି ଆଣିଛି । ମୁଁ ଖାଇ ବସିଲି । ତାକୁ ଖୁଆଇଦେଲି । ସେ ସରଳ ଓ ସହଜ ଭାବରେ ଖାଇଦେଲା ସତ କିନ୍ତୁ ତାର ଦୁଇ ଆଖିରୁ ଝର ଫିଟିଲା । କିଛିକ୍ଷଣ ଯାବତ୍ ମୋର ଅନୁରୋଧ ସତ୍ତ୍ୱେ ସେ ଲୁହ ଆଉ ଶୁଖି ନଥିଲା ।

କିଛିକ୍ଷଣ ପରେ ସେ କହିଲା– ସତ କହିବ ବିନୋଦଭାଇ, ମୁଁ କ'ଣ ପ୍ରକୃତରେ ସୁନ୍ଦର ? ମୁଁ ଗୋଟିଏ ମୁହୂର୍ତ୍ତ ମଧ୍ୟ ଅପେକ୍ଷା ନକରି କହିଥିଲି– ସୁନ୍ଦର, ପ୍ରକୃତରେ ସୁନ୍ଦର । ଏଥିରେ ଟିକିଏ ବୋଲି କିନ୍ତୁ ନାହିଁ ସୁକାନ୍ତି ।

ତା'ପରେ ସୁକାନ୍ତିକୁ ଦେଖିଲି– ଯେଉଁ ସାନ ସାନ ଭାଇଭଉଣୀମାନେ ତାକୁ କାଳୀ ଅସୁନ୍ଦରୀ ବୋଲି ଥଟ୍ଟା କରୁଥିଲେ, ତାଙ୍କୁ ଜବାବ ଦେଲା ଏବଂ ମା'ଙ୍କୁ ସାଫ ସାଫ କହିଦେଲା– ତମେ ମା' ଯେତେଟା ଭାବୁଛ ମୁଁ ଅସୁନ୍ଦରୀ, ସେତେ ନୁହେଁ । ମୁଁ ସୁନ୍ଦରୀ ।

ଯେଉଁ ଝିଅଟି ଅବନ୍ତୀ, କଲେଜରେ ଆଇ.ଏ. ପଢୁଛି, ସେ ସୁକାନ୍ତିର ସାନଭଉଣୀ । ମୋତେ ଆସି ଦିନେ କହିଲା, ତମେ ଗଳ୍ପ ଲେଖକ, କଳାକାର, ଶିଳ୍ପୀମାନଙ୍କର କ'ଣ ଆଖି ଖରାପ ବୋଧହୁଏ !

ଅଭିଯୋଗଟିକୁ ମୁଁ ଟିକିଏ ହୃଦୟଙ୍ଗମ କରି କହିଲି– କ'ଣ ହେଲା କହୁନ ?

ଅବନ୍ତୀ କହିଲା– ମୁଁ କହିବାକୁ ଚାହୁଁଛି, ତମର ଏହି ଶିଳ୍ପୀ-ଲେଖକ ଗୋଷ୍ଠୀର ଆଖି ଖରାପ ନା ମୁଣ୍ଡ ଖରାପ ? ତାହା ନହେଲେ ସୁକାନ୍ତି ଅପାକୁ ତମେ ସୁନ୍ଦରୀ କୁହନ୍ତ ନାହିଁ । କି ସେ ଭଲ ଶାଢ଼ି ଦେହରୁ ଖସାନ୍ତା ନାହିଁ । କି କେଶ ବିନ୍ୟାସରେ ମହଣେ ସ୍ନୋ-ପାଉଡ଼ର ମାରି ହୁଅନ୍ତା ନାହିଁ ।

ସତକୁ ସତ ଦ୍ୱିପ୍ରହରେ ସୁକାନ୍ତି ଘରକୁ ପଶିବା ପୂର୍ବରୁ ଘରଟି ସୁବାସରେ ଆମୋଦିତ ହୋଇ ଉଠିଲା । ସେ ଆସିଲା, ବସିଲା । ମୁଁ ଅନାଇ ନାହିଁ । ସେ ବହୁ ସମୟ ଅପେକ୍ଷା କଲା । ଏକ ଘଣ୍ଟାରୁ ଅଧିକ । ଚେଷ୍ଟାକଲା ତା ଆଡ଼କୁ ମୋ ନଜର କିପରି ପଡ଼ିବ । ମୁଁ ଜାଣି ଜାଣି ତା' ଆଡ଼କୁ ଚାହିଁ ନଥିଲି ।

ରାତି ଅଧରେ ଡାକ ଶୁଣି ଘରୁ ବାହାରିପଡ଼ି ଦେଖେ ଯେ ସୁକାନ୍ତିର ମା' ଅପେକ୍ଷାରେ– ସୁକାନ୍ତି ବାୟାଣୀ ପରି ହେଉଛି । ଦେହରେ ଭୀଷଣ ଜର ।

ମୋତେ ଦେଖି ସୁକାନ୍ତି ମୁହଁ ଲୁଚେଇଲା ଏବଂ କଇଁ କଇଁ କାନ୍ଦିବାକୁ ଲାଗିଲା । ଆଲୋକରେ ଦେଖିଲି ମୁହଁରେ ନଖ ଆମ୍ପୁଡ଼ାର ଦାଗ ପଡ଼ିଛି । ତାର ମଥାରେ ଧୀରେ ଧୀରେ ହାତ ବୁଲାଇ ଦେଲି । ସେ ଯେପରି ଏକ ଆଶ୍ୱସ୍ତିରେ ନିଦ୍ରା ଗଲା । ସାରା ରାତି ମୁଁ ତାରି ପାଖରେ ବସିଛି । ଜ୍ୱର କ୍ରମଶଃ ବଢ଼ି ବଢ଼ି ଚାଲିଛି । ଡାକ୍ତର ଅନ୍ୟ ଘରେ ଅପେକ୍ଷା କରି ବସିଛନ୍ତି ।

–କପଟ କରନା, କୁହ ମୁଁ ସୁନ୍ଦର ନା ?

–ତମେ ସୁନ୍ଦରୀ ସୁକାନ୍ତି ।

–କିମିତି ସୁନ୍ଦର, କୁହନା ?

–ଶରତର ନେଳୀ ଆକାଶ ପରି ସୁନ୍ଦର । ପୌଷର ଧାନଭରା କ୍ଷେତପରି ସୁନ୍ଦର । ବରଷା କାଳର ବା ବରଷାପୁଷ୍ଟ ନଦୀପରି ସୁନ୍ଦର, ଶୋଭାବନ୍ତ ।

–ମୋତେ କଣ କିଏ ବାହା ହେବ ?

–ତମଠାରେ ଏତେ ସୌନ୍ଦର୍ଯ୍ୟ ଆଉ କିଏ ନ ବାହାହେବ ତମକୁ ?

–ଥଟ୍ଟା କରୁନ ତ ତମେ ?

–ନା, ସୁକାନ୍ତି ।

–ତେବେ ମୋର ବାହାଘରରେ ଏଇପରି ଶରତର ସ୍ୱଚ୍ଛ ନେଳୀ ଆକାଶ, ପୌଷର ଧାନଭରା କ୍ଷେତ ଆଉ ବରଷା କାଳର ଜଳଭରା ନଦୀ ଫୁଲି ଉଠିବ ନା ?

–ହଁ ସୁକାନ୍ତି ।

–ଆଉ ମୋର ବର, ଯାହାକୁ ବାହା ହେବି...

–ସେ ଆସିବ ଦୋଳମୁକୁଟ ପିନ୍ଧି ମୋଟରକାର ଆଗରେ । ସାରିବାନ୍ଧି ଚାଲିଥିବ ଦଲାସ ଝାଡ଼ । ତେଲିଙ୍ଗି ବାଇଦ ଆଗରେ ।

–ଆଉ ?

–ଆଉ ନାନା ଜାତିକା ବାଣ ଫୁଟିବ । କେତେ ରଙ୍ଗର– କେତେ ପ୍ରକାରର ।

–ଆଉ ତମେ ?

–ମୁଁ ସବୁ ତଦାରଖ କରୁଥିବି ।

–ନା ନା, ତମେ ଖୁବ୍ ସଜାଇପାର । ମୋତେ ସଜାଇ ଦେବ । ମୋର ନଖଗୁଡ଼ିକରେ ସେଇ ଯେଉଁ ରଙ୍ଗ ଅଛି ଫିକା ଗୋଲାପି– ପିନ୍ଧାଇଦେବ । ଆଉ...

ଡାକ୍ତର ଆସିଲେ । ଉଦ୍‌ବିଗ୍ନ ଚିତ୍ତରେ ଇଞ୍ଜେକ୍‌ସନ ଦେଲେ ।

ଆଉ ସେଇ ରାତ୍ରି ଶେଷରେ ଯେତେବେଳେ ଆକାଶରେ ଚେନାଏ ହେଲେ ମେଘ ନଥିଲା, ପୌଷ ପୂର୍ଣ୍ଣମୀର ନୃତ୍ୟ ଆରମ୍ଭ ହୋଇଥିଲା । ଏକ ମଧୁର-ମନ ଫୁଟେଇ ସୁକାନ୍ତି ହସି ଦେଇ ଚାଲିଗଲା ।

ସୁକାନ୍ତି ମରିଗଲା ପରେ ମୁଁ ସେ ଜାଗା ଛାଡ଼ି ଦେଇଛି । ଅଙ୍କନରେ ସିଦ୍ଧି ପାଇଲି ନାହିଁ । ସେ ଯେପରି କେବଳ ବର୍ଷାର ବର୍ଷାପୁଷ୍ଟ ନଦୀ । ଆଶା ଜୀବନରେ କେବଳ ସଫଳ କରିପାରି ନଥିଲା । ଭାବିଥିଲା– ଭାଷା ଥିଲା । ଯୋଗ୍ୟତା ମଧ୍ୟ ଥିଲା ।

ମୁଁ ଅଙ୍କନ ଛାଡ଼ି ଗଳ୍ପ ଲେଖକ ହେଲି ।



# ଶୁଭ ବିବାହ

ଆହୁରି ଋରିକୋଶ ବାଟ । ରେଳଗାଡ଼ିରୁ ଓହ୍ଲାଇ ବଳଦଗାଡ଼ିରେ ଯିବାକୁ ପଡ଼ିବ । ବର୍ଷାଦିନ, ଆଷାଢ଼ ମାସ । ଝରଝର କରି ବରଷା ଝରୁଛି । ମଝିରେ ମଝିରେ ଚଡ଼ଚଡ଼ି ବିଜୁଳି ।

ବରଯାତ୍ରୀମାନେ ପଛରେ ରହିଲେ କ୍ଷତି ନାହିଁ । ବର ଆଗ ଯିବା ଋହି । ଲଗ୍ନ ଗଡ଼ି ଯାଉଛି । ମୁଁ କାଳୀପଦ ପାଖକୁ ଯାଇ କହିଲି– ମୁଁ ଭାଇ ଫେରିଲି, ଏ ବରଷା କାଦୁଅରେ ବରଯାତ୍ରୀ କଷଣଟା ମୋତେ ବଡ଼ ବାଧୁଛି । ଷ୍ଟେସନରୁ ଯାହା ଯେତକ ଖାଇଲି ସେତକ ମାଇଲେକେ ଶେଷ । ଦାଦା କହିଲେ– ଋଲ ଫେରିଯିବା ହୋ, ବାହାଘର ବନ୍ଦ ହେଉ । କନିଆଘର କିନ୍ତୁ ଗୋଟାଏ ଯୋଗାଡ଼ କରିପାରିଲା ନାହିଁ । ଆମେ କେଉଁ ଗାଈର ଗୋବର ହେ ? ଆମ ପୁରୁଖା ଲୋକ ବାପ ବଡ଼ାପା କହିଲେ ଋଲରେ ପଳେଇବା । କ'ଣ କଥାଟାଏ ଯେ– ଋଲ । ସମସ୍ତେ ସମୁଦ୍ର ଲଙ୍ଘନ କରିବା ପୂର୍ବରୁ ମାଙ୍କଡ଼ ପରି ହୁଁ ହୁଁ କଲେ ।

ଆଚ୍ଛା ବର ମହାଶୟ କେଉଁଠି ?

ଆରେ ଯେ କ'ଣ, ନାରଣ କାନ୍ଦୁଛୁ କାହିଁକିରେ ? ଆରେ ଭୋ ଭୋ ରଡ଼ି ଛାଡ଼ିଛି । କହିଲି– ଚୁପ୍ ଚୁପ୍, ପଢ଼ିଲା ପିଲା ତୁ । ବାପ ଅଜାଙ୍କ ନାଆଁ ତଳେ ପକେଇବୁ । କାହିଁ ଲ' ପାସ୍ ପିଲା । ତୁ ଇମିତି ହେଲେ ଚଳିବ ?

କଥାଟା ଅଛପା ନାହିଁ । ବଡ଼ଖୁଡ଼ୀ ବୋଉ ଆଗରେ ଯେଉଁ କଥାଟା କହୁଥିଲେ କଥାଟା ତେବେ ସତ– ନାରାୟଣ ପରି ଶାନ୍ତ ପିଲାର ଅବସ୍ଥା କ'ଣ ଏପରି ହୁଅନ୍ତା ? କିମିଆ କରିଚନ୍ତି ସେମାନେ ।

କିମିଆ ଶବ୍ଦଟାର ଅର୍ଥ ମୁଁ ଜାଣେ । ଆଗରେ କେବେ କୁଆଡ଼େ ନାରଣ ଅଜ୍ଞାତରେ ଭଲପାଇ ବସିଛି । ହଁ ଗାର୍ଲସ୍କୁଲ ଫାଟକ ପାଖରେ ନଚେତ୍ ପୋଲିସ୍ କ୍ଲବ୍ ପାଖରେ । ବନ୍ଧୁ ସଚ୍ଚିଦାନନ୍ଦ କିନ୍ତୁ ଏ ବିବାହରେ ଗୋଟାଏ ପ୍ରତିବନ୍ଧକ । ସେ ଏଥିରେ ନାମଙ୍ଗ । ହୋଇଥିବ ସେ ସିମିତି ପ୍ରେମ କରି ବସିଥିବ । କିନ୍ତୁ ନାରଣର ଶାଶୂ ଗୋଟିଏ ପକ୍କା ଆଇନବାଜ ଝିଅ । କଥା କଥାକେ ସପ୍ତମରେ ଏବଂ ଅଷ୍ଟମରେ ଶ୍ୱଶୁରଙ୍କ

ଉପରେ କର୍ତ୍ତୃତ୍ୱ ଜାହିର କରନ୍ତି । ତାଙ୍କଠାରୁ ଟ୍ରେନିଂ ପ୍ରାପ୍ତ କୁନି, ଗୁନି, ମନି, ଟୁନି, ସୁନି ଇତ୍ୟାଦି ବେଶ ତାରକା ଭାବରେ ପରିଚିତା ହେବେ– ଆଶା କରାଯାଉଚି, ଛାଡ଼ ! ଛାଡ଼ ଏ ସବୁ ଶୁଣା କଥା– କାନ କୁହା କଥା, ମିଛ ନୁହେଁ ତ ଗାଲୁଆ କଥା । ତେବେ...

ଆମ ନାରାୟଣକୁ ଯେ ପ୍ରେମ ଘାରିଛି ସେ କଥା ଦିଶୁଛି । କାହିଁକି ନା ପ୍ରେମଟା ବଡ଼ ବ୍ୟାପକ । ଏ ଯୁଗରେ କନ୍ୟାକର୍ତ୍ତାମାନେ ଏଥିରେ ଭାରି ସାବଧାନୀ– ଝିଅଲୋ ଦେଖ, ଡିମେଣ୍ଡ୍‌ଟା ତୋ ତରଫରୁ କଟେଇନେ । ଟିକିଏ ତରଳ ରହାଣି ଢାଳ । ହଁ, ହାତରୁ ଖସିଗଲେ ବଡ଼ ହଇରାଣରେ ପଡ଼ିବୁ । ମା' ଶିଖାନ୍ତି– ଆଲୋ ଯଦି ପାଇଥିବୁ ଗେରସ୍ତ ବୁକୁ, ସଜ ହୋଇଥିବୁ ବାପଘରକୁ ।

ଅରିଗୋଳ ବୋଲି ଗୋଟିଏ ଗାଁ । ସେଇଠିକୁ ନାରଣ ଯିବ ବାହାହୋଇ । ନାରଣକୁ ନିଆଯାଇଛି । ପାଗଳା ହୋଇଛି । ମୁଁ ବଡ଼ଦାଦାଙ୍କ ପାଖରେ ଯାଇ ଠିଆହେଲି ପ୍ରତିନିଧି ହୋଇ– ଦାଦା, ଏତେ ବାଟ ଅଇଲେଣି ଆଉ କିଆଁ ଡେରି କରିବା । ଚଲ, ଯଦି ବାଟରେ ଲୋକ ଆସୁଥିବେ ଭେଟିବା ନିଶ୍ଚୟ ।

ବଡ଼ ଦାଦା କହିଲେ– ଦେଖ ହେ ! ଏ ଟୋକାଟାକରା ଯୁଗ । କେଡ଼େ ବଦମାସ ଏଁ ! ଟୋକାଟାର କି ନିଆଁ ହେଲା ହେ ଗୁଳିଖିଆ ପରିଯନ୍ତେ ଗଲା । ଗଲା ଗଲା ଏଣେ ତ ଡିମେଣ୍ଡଟା ଗଲା ।

ଭାଗୁ ବାପା କହିଲେ– ଆହେ ଚୁଲ୍ଲୀକୁ ଯାଉ ସେ ଡିମେଣ୍ଡ କଥା– ବ୍ୟବହାର କ'ଣ ଏଇ ବାଟ ମଝିରେ ଆମେ ଅନାଥା– ତ୍ରାହି ତ୍ରାହି ଡାକ ।

କ'ଣ ନା...

ମୁଁ କୁହାଇ କହିଲି– ଫେରିଲେ ଦାଦା, ବଂଶର କଳଙ୍କ ହେବ । ଯଦି ଦୁହେଁ ସୁଖୀ ତେବେ ଆମର ଅମତ ପ୍ରୟୋଜନ ହୁଏନା ।

ଭାଗୁ ବଡ଼ାପା କହିଲେ ସେଇଥିପାଇଁ ପରା କହନ୍ତି ଗୁରୁଜନମାନଙ୍କ ମତ ନନେଲେ ଏଇଆ ହୁଏ । ତମେ ତ ଟୋକାଏ କାଲିକା ମେଚଡ଼ା ଟୋକା, ଆଖିରେ ଯୌବନ ଫିଙ୍ଗଡ଼ା ଲାଗିଛି । ସଂସାର ଭିତରେ ପଥର ହୋଇ ସହି ସେତକ ଆମର ହୋଇଛି । ତା' କଣ ତୁମେ ମନା କରିପାରିବ ? ଏତେ ବଡ଼ ବଉଁଶରେ କହିଲୁ ଏ କଳଙ୍କ କ'ଣ ସାଜେ ?

ଯା'ହେଉ ଆକାଶଟା ପରିଷ୍କାର ହୋଇଗଲା । ଗୋସେଇଁ ମହାପ୍ରଭୁ କହିଲେ– ଆଉ ବିଚାର କିଆଁ ହେ ଚାଲ ସର୍ବମଙ୍ଗଳ ଜଗନ୍ନାଥ କରି ଆଗେଇଯିବା । ଯାହା ମିଳିବ ସେ ତ କର୍ମରେ ଅଛି । ଶୁଭ କାମକୁ ଡେରି କରିବା କିଆଁ । ଏତେ ବାଟ ଜଙ୍ଗଲ ପାରିହୋଇ ଆସିଛେ– କିସ ଫେରିବା କିହେ ?

ଆକାଶଟା ପରିଷ୍କାର ହେଲା । ମନରେ ଉଜ୍ଜ୍ୱଳତା ଆସିଲା । ଆମେ ବାହାରିଲୁ । ନାରଣ ମନରେ ହସ ଉକୁଟିଲା । ମୋତେ ଡାକି କହିଲା– ଆଉ କେତେ ବାଟରେ ? ଖଦଡ଼ିଆ ରାସ୍ତା– ମୋଟର ଚାଲିବାର ଉପାୟ ନାହିଁ । ହଳିଆ ଗାଡ଼ି ଚାଲିଛି । ଚାଲିଛି ଯେ ଚାଲିଛି । ଏଇ ଯେ କ'ଣଟାଏ– ସବାରି ବେହେରା !

ନାରଣ ଗୋଟାଏ ଲମ୍ଫ ଦେଇ କହିଲା– ଦେଖିଲୁ ଦେଖିଲୁ ମୁଁ କ'ଣ କହିଥିଲି ରେ । ଆରେ ମୋର ପସନ୍ଦ– ମୋର ଲାଏକ୍, କ୍ୱାଇଟ୍ ଅପ୍ ଟୁ ଡେଟ୍ । ନାରଣ ମୁହଁକୁ ଖୋଲି ଅନେଇ ରହିଥିଲି । ମନରେ ତାର କଣ୍ଠିତ କାନ୍ତା ବିରହ କରୁଣାର ସ୍ୱର ଗୁମୁରି ଉଠୁଥିଲା ।

ସବାରି ବେହେରା ସିନା ଆସିଲେ, ହଇରେ ବରଧରା କାଇଁ ! ! ଆଚ୍ଛା କଥା ଏ– ବରଧରା ନାଇଁ ! ମନ ଦୁଃଖରେ ଖିନିଖରାପ ହୋଇଗଲା । ମାତ୍ର ଗୋଟିଏ ସବାରି ବର ପାଇଁ । ତା'ପରେ ବରଯାତ୍ରୀମାନେ ଯେପରି ହେଉ ଆସନ୍ତୁ ଅର୍ଥାତ୍ ପଦଯାତ୍ରାରେ ।

ବର ଗଲା ଆଗେଇ । ପଛରେ ପଡ଼ି ରହିଲୁ ଶ୍ରୀମାନ୍ ବରଯାତ୍ରୀର ଦଳ । କଥାହେଲା ବର ଗାଁ ବଟଗଛ ପାଖରେ ଆମକୁ ଅପେକ୍ଷା କରି ରହିଥିବ ।

ବର ଚାଲିଗଲା । ବରଯାତ୍ରୀ ରହିଲେ ପଛରେ । ଗୋରୁଗାଡ଼ି ବି ଆଉ ଚାଲିଲା ନାଇଁ– ଏଥର ନିଜେ ନିଜେ ପାଦରେ ଚାଲିଲୁ । ଗୋସେଇଁ ଶ୍ରୀ କାଶୀନାଥ ଖସଡ଼ାମାଟିରେ ତିନିଥର ପିଚ୍ଛୁଳିପଡ଼ି ମଥା ଫଟେଇଲେ । ଆଷାଢ଼ ମାସ ।

ଜୟ ଜଗନ୍ନାଥ– ମା' ମଙ୍ଗଳା– ତାରା । ନଦୀ– ବଡ଼ନଦୀ ପାରିହେବାକୁ ହେବ । ମନରେ ଭାଳେଣି ପଡ଼ିଲା, କ'ଣ କରିବା ଆମେ ? ଆଖିରୁ ଯେମିତି ଜୁଳୁଜୁଳିଆ ପୋକ ବାହାରିଲା । ଭାଗ୍ୟକୁ ଡଙ୍ଗା ପଡ଼ିଛି । ଡଙ୍ଗା ଯେତେବେଳେ ଅଧା ନଈରେ, ଆସିଲା ବରଷା ଗଡ଼ଗଡ଼ ହୋଇ । ପୃଥିବୀ କମ୍ପାଇଲା । ପାଟି ଆଫା ଆଫା ମାରିଗଲା । ହା ଭଗବାନ, ରକ୍ଷା କର ହେ– ଭଗବାନ ।

ବରଗଛ ମୂଳେ ବର ବସିଛି । ଭୋକ ତ ଲାଗୁଛି । ବିଚରା ନାରଣ କରେ କ'ଣ ? ନାଇଁମ ମନଟା ସେଇ ବିନତା ପାଇଁ । କି ସୁନ୍ଦର ମୁହଁ । ଲମ୍ବା ନାକ– ଓଠ

ତଳରେ କ୍ଷୀଣ ମୃଦୁହାସ୍ୟ– ଆଉ ଗୀତ– ତୋ ଘେନି ତମାଳ ଶ୍ୟାମ ମୋ ମରଜି । ଆଉ ସିନେମାର ସଙ୍ଗୀତ– ମୁଝେ କିସିସେ ପ୍ୟାର ହୋଗୟା । ଗତ କଥାଗୁଡ଼ିକ ଗୁଡ଼େଇ ତୁଡ଼େଇ ତା' ମନକୁ ଆସିଲା ଗୋଟି ଗୋଟି ହୋଇ । ଭାବନା ଚିନ୍ତାରେ ନିଆଁ ଲାଗିଲା । ଭାବିଲା ବାହାଘର ଆଗରୁ ବାଡ଼ି ପଛପଟରେ ଯାଇ ଦେଖିବ କିମିତି ତାର ବିନତା ମୁହଁକରି ବସିଥିବ । ସେଇଠି ଦେଖା ଦବ, କିଏ ଚିହ୍ନୁଚି ? ସବୁ ଛାଡ଼ିଛୁଡ଼ି ଦେଇ ଆମ ନାରଣ ଆଗେଇଲା । ସେ ଯେଉଁ ଅରମା ବଣ । ସପ୍ତଫେଣୀ କଣ୍ଟା– କିଆବୁଦା ତଳେ ମଣିଷ ଗୁହ । ସବୁ ତୁଚ୍ଛ ହେଲା । ଛୋଟ ଝରକାଟିଏ, ତାରି ତଳେ କାନ ପାରିଲା ।

ଏଁ! ଏ ତ ବିନତାର କଣ୍ଠ– ଆହା ବୀଣାର ଝଙ୍କାର । ପଚ୍‌କରି କଣଗୁଡ଼ାଏ ପଡ଼ିଗଲା– ଆରେ ଯେ କ'ଣ– ଏହେ ପାନଛେପ ଗୁଡ଼ାଏ । ପରବାୟ ନାହିଁ ଏ ତ ପ୍ରେମର କଥା, ମାନିଲେ ଚଳିବ କେମିତି । ଏଡ଼ୱାର୍ଡ଼ ପରି ଲୋକ ନାରୀପାଇଁ ସିଂହାସନ ଛାଡ଼ିଲେ ଆଉ ନାରଣ ବିନତା ପାଇଁ ଏତକ ପାରିବନି । ବିନତା ଯଦି ଥରେ ଦେଖି ପକାଇବ ନା ଆଶ୍ଚର୍ଯ୍ୟରେ ଋହିଁବ । କହିବ– ତମେ ସେଇ ପୁରୁଣା ଯୁଗର ଲାଇଟ– ତୁମେ ସେଇ... ନାରଣ ଆଉ ରହିପାରିଲାନି । ଘରେ ସମସ୍ତେ ଥଟ୍ଟା କରୁଛନ୍ତି– ସାନଭଉଣୀ ସାଙ୍ଗ । 'ମନଲାଖି ପାଇଲୁ ଲୋ । ଜିତିଲୁ ତୁ ଏକା ସତେ । ବିନତାର ସେଇ କଥା– ସେ ନା ଭାରି ଭଲ– ତୁମେ ଭାରି...

କଣେଇ ଋହିଁଲା ଝରକାରେ । ଯେ କିଏ, ଶୁଭ୍ରା– ବେଶ୍ ସୁନ୍ଦର ଗଢ଼ଣ ଭଙ୍ଗିମା । ବନ୍ଧୁ ହେବେ ପରା । ତେବେ ବିଶ୍ୱସ୍ତ ଏବଂ କହିବାର ଠାଣି ନାହିଁ । ଆଉ ଜଣକ କୃଷ୍ଣା– ସରୋଜ ନୟନୀ, ଢଳଢଳ ଠାଣି । ଚଳନରେ କ୍ଷିପ୍ରତା । ଦୁଇଟି ବେଣୀ ଲମ୍ବିଯାଇଛି ଏବଂ ତାହାର ସଂଯୋଗ ପୁଣି ହୋଇଯାଇଛି । ସେଇ ମଥା ଉପରେ । କୃଶ ଦେହ କ୍ଷିପ୍ର କିନ୍ତୁ ଆଖିର ଡୋଳା । ଯେ ନିଶ୍ଚୟ ବିନତାର ଭଉଣୀ । ମନେ ମନେ ସେ ଭାବିଗଲା କେତେ । ଏଥର ସେ ଉଠିଲା । ସାହସ କରି ମୁହଁ ଭିତରେ ପୂରାଇଲା । ଦକ୍ଷିଣ ନାୟକ ପରି ମୁଖଭଙ୍ଗୀ କଲା ସେ । ତାକୁ ଦେଖି ଭୂତବୋଲି କହି ଦଉଡ଼ ଦେବାକୁ ବାହାରିଲେ । ନାରଣ ଏକଦମ ଭିତରକୁ ଡିଆଁଟାଏ ମାରି କହିଲା– 'ବିନତା– ମୁଁ-ମୁଁ ପରା ।'

ତା'ପରେ ତା' ଉପରେ... !

ରାତି ଆଠୁଟାରେ ଯେତେବେଳେ କନ୍ୟା ଘରେ ଆମେ ପହଞ୍ଚିଲୁ, ଭାଗୁ ବଡ଼ାପା କପାଳକୁ ଆଖି ଖୋସିଲେ– ବର କାହିଁ– ? ବର ! ! !

କନିଆ ଦଳ ମନଦୁଃଖରେ ଗୁମ୍‌କରି ବସିଛନ୍ତି, ବର କାହିଁ ! କନିଆ ବରପୂର୍ବା ହେଲେ କଥାଟା ଶେଷ । ମଙ୍ଗନ ଶେଷ ହୋଇଯିବ । ଏଥର ମୋ ଉପରେ ଜୋରକଲେ ସେମାନେ । ସେତେବେଳକୁ ବେଶ ଆଦର ଯତ୍ନ– ବେକରେ ଗାମୁଛା ପକାଇ କହିଲେ– କନ୍ୟାଟି ଅଭିଆଡ଼ି ହୋଇ ରହିବା କ'ଣ ଭଲ ହେବ ? ଏଥର ଦାଦା ମୋ ଉପରେ ବୋଝଲଦି କହିଲେ– ନାଇଁରେ ତାହା ହବନି । କନିଆ ଦଳ କହିଲେ– ଯେତେ ଡିମେଣ୍ଡ ସବୁ ଦେବୁ ବାହାଘର ହଉ ମାଆନ୍ତେ । ନ ହେଲେ ଅବସ୍ଥାଟା ଭଲ ଯିବ ନାହିଁ । ଡାକ୍ତର ଭାଇ କହିଲେ– ନା ।

ଖିଆପିଆଟା ହୋଇଗଲା । ଆମେ ଭାଲେଣିରେ ବସିଛୁ କାହିଁଗଲା ନାରଣ ? କ'ଣ କଲା ସେ ? ଏତେବଡ଼ ମେଘରେ ସବାରି ବେହେରା କିଛି କହିପାରୁ ନାହାନ୍ତି, ବରଷାବେଳେ ବରକୁ ଛାଡ଼ି ସେମାନେ ଦେ' ଛୁ–

ଏତିକିବେଳେ ଘରେ ପାଟି ଶୁଭିଲା । କାହାର ପାଟି ଏ ? ଚୋର ଚୋର– ଶଳା– ଶଳା ବାଡ଼ିଦୁଆରରେ ପଶିଛି । ପିଟରେ, ବେହି ପୋ ଶଳାକୁ ପିଟରେ । ତା'ପରେ ମାଡ଼– କି ମାଡ଼ ସେ ! ଅନ୍ଧାର ବେଶ । କିଛି ଜଣାପଡୁ ନଥାଏ । ଲୋକଟାକୁ ଚିହ୍ନି ବି ହେଉନଥାଏ । ଦାଦା କହିଲେ– କିଏ ରେ ଏଟା ? ତାଙ୍କ ବାରିକ ସୁରିଆ ଗୋଟାଏ ଝାଟରେ ପାହାର ଉପରେ ପାହାର ପକେଇ ଟାଣି ଟାଣି ଆଣୁଥାଏ । ଲୋକଟି ମୁହଁ ଲୁଚେଇବାକୁ ଚେଷ୍ଟା କରୁଥାଏ ।

ଭାଗୁ ବଡ଼ାପା କହିଲେ– ଲଗାରେ, ଶଳାକୁ ଜୋରକରି ପାହାର ପକା । ମାଡ଼ ଖାଇ ଖାଇ କୁରୁତାପଟା ଚିରିଯାଇଛି । ରକତ ଧାର ଧାର ହୋଇ ବାହାରୁଛି । ମୁଣ୍ଡଟା ଠାଏ ଠାଏ ଫାଟିଯାଇଛି ।

ମୁଁ ଉଠିଯାଇ କହିଲି– ଆରେ ରୁହ ମରିଯିବ ଲୋକଟା । ମୁହଁଟାକୁ ଦେଖି ଚମକି ପଡ଼ିଲି । ପାଖକୁ ଗଲି– କିରେ ତୁ ! !

–ପାଟି କରନା, ଏ ଅପମାନରୁ ମୋତେ ବଞ୍ଚା । ଧରି ଧରି ସବାରି ଭିତରକୁ ନେଲି– ଯେମିତି କେହି ନ ଜାଣନ୍ତି ।

ବଡ଼ବାପା କହିଲେ– ନାରଣ ଅଇଲା କିରେ ।

ନାରଣକୁ ସେତେବେଳକୁ ଶହେ ତିନି ଜର ।



# ସୁଖ ସ୍ୱପ୍ନ

"ରଡିଫ୍ ହାୟ– କ୍ୟା କରତିନ ବେ ? ବେ ଉଠ୍ !"

ରଡିଫ୍ ତାର ମଦରଙ୍ଗା ନାଲି ଆଖିରେ ଚାହିଁଲା ସେଲିମ ଆଡ଼କୁ ।

ରଡିଫ୍ ସେତେବେଳେ ପାଏ ପାଏ କରି ଦୁଇଥର ସାରି ଅଧା ସେକା ଶୁଖୁଆକୁ ପାଉଁଶ ନିଆଁରେ ଏପାଖ ସେପାଖ କରି ତାତିଛି କି ନାହିଁ– ଦାନ୍ତରେ କଡ଼ କଡ଼ କରି ଚୋବାଇ ଚାଲିଛି । ଶୁଖୁଆଟା ଚେମଡ଼– ଛିଣ୍ଡୁନି ସହଜରେ ।

ସେଲିମ୍ ସେଇ ତାଟିଘେରା ଘର ଭିତରକୁ ପଶି ଅଧାଛିଣ୍ଡା ଦଉଡ଼ିଆ ଖଟଟା ଉପରେ ବସି ତା'ର ସଯତ୍ନ ସଂରକ୍ଷିତ ମସୃଣ ଜାଫ୍ରାନ ରଙ୍ଗ ଦାଢ଼ି ଉପରେ ହାତ ବୁଲାଇବାକୁ ଲାଗିଲା ।

ମକରା ଉଠି ଠିଆହୋଇ କହିଲା, "ସେଲିମ୍ ମିଆଁ– କିସ ଦେବି ରେ ?"

ସେଲିମ୍ ଅଳପ ଚାହିଁଲା ।

'ପା'ଏ ?– ହୁଁ'

ସେଲିମ୍ ପୁଣି ଆରମ୍ଭ କଲା– "ବେ ରଡିଫ୍, ଆଛା ଆଦିମ ବେ– ସକିଲା ଉଧର୍ ମରଯାତିନ୍, ବଚ୍ଚା ହୋନେବାଲା, ଜଲ୍‌ଦି ଯାଆ, ଉଠ୍– ରଡିଫ୍– ଏ ରଡିଫ୍ ।"

ରଡିଫ୍ ଚାହିଁଲା । ଚାନ୍ଦିପୁର ରାସ୍ତା ଉପରେ ପ୍ରୁଫ୍ ଏଣ୍ଡ ଏକ୍ସପେରିମେଣ୍ଟର ଟ୍ରକ୍‌ଟା ବୋଧହୁଏ ।

ସେଲିମ୍ ସେତେବେଳେ ଗଳାନଳୀରେ ଛାଡ଼ି ଦେଇଛି । ରଡିଫ୍ ଚାହିଁ ଟିକିଏ ହସିଲା । ପଛପଟୁ ଅଫିମ ଅଧଭରି ପକାଇ ଦେଇ ବସିଛି ବନବୁଢ଼ା– କିସ ପାଇଁ ବସିଛୁ ବେ ? ମାଇକିନାଟାର ଗର୍ଭ କଷ୍ଟ, ଦି'ଟା ଭାଇ ଏଇଠେ ବସିଛ । ଘରେ ଦେଖିବାକୁ କେହି ନାଇଁ ।

ରତିଫ୍ ଚମକି ପଡ଼ି ଉଠିଲା, ହସିବାକୁ ଚେଷ୍ଟା କଲା । ଟିକିଏ ରଙ୍ଗ ଆରମ୍ଭ କଲା– "ଦିଲ୍ ବେକରାର୍ ହେ ।"

ଗୋଡ଼ ଘର ଦୁଆର ମୁହଁକୁ ଦେଇଛି, ନିଶାଟା ଛାଡ଼ି ଛାଡ଼ି ଆସୁଛି; ଶୁଣିଲା କିଏ କାନ୍ଦୁଛି । ସକିଲା ? କାନ୍ଦୁଥିବ– ଜାମା କି ଶାଢ଼ି ଖଣ୍ଡେ କିଣିଦେଇପାରିନି । କିଛି ଦେଇନି । ଦେଇଛି ତାକୁ ଖାଲି କଷ୍ଟ– ଯାତନା । ସକିଲା ଜାତିରେ ଯାହା ପାରେ ତା' ହେଉନା କାହିଁକି, ରତିଫ୍ ଯେଉଁଦିନ ନିକା କରି ଆସିଲା, ସାନଭାଇ ସେଲିମ୍ ସବୁଠାରୁ ଖୁସି ହୋଇଥିଲା । ପାଖ ଘରୁ ଶ୍ରୀଧର ଜେନା ଟିକିଏ ନାକ ଟେକି ଦେଲା– କିନ୍ତୁ ମୁହଁରେ କହିଲା– ଏଣିକି ଘରକରଣା କର ।

ଦିନେ ରତିଫ୍‌ର ବାପା ଚମଡ଼ା ପଟାଦାର ହୋଇ ବହୁ ଟଙ୍କା ଆୟ କରିଥିଲା । ରତିଫ୍ ବାପର ବେଉସାକୁ ଛାଡ଼ିଦେଇ ମାଛ ବେପାର କଲା । ସେଲିମ୍ ଏକଦମ ପାଲଟିଗଲା ଫେରିବାଲା । ଜଲେଶ୍ୱରରୁ ଖଡ଼ଗପୁରକୁ ଚାଉଳ ଫେରା କାରବାର କରି ଗୋଟାଏ ମୋଟା ଟଙ୍କା କମାଇଥିବା ସମସ୍ତେ ଜାଣନ୍ତି ।

ଏ ଭିତରେ ରତିଫ୍‌ର ଗୋଟାଏ ଖିଆଲ ବଢ଼ିଲା । ସୁନହଟ ଛକ ଉପରୁ ସୁନହଟ ବାଙ୍କ ଉପରକୁ ଘର ଉଠାଇ ନେବାକୁ ଚେଷ୍ଟା କଲା । ଇଟା ପୋଡ଼ା ହେଲା– ସୁର୍କି ତିଆର ହେଲା । କାନ୍ଥ ଦି'ହାତ ଉଠିଲା । ପାଖ ଥାନାବାବୁକୁ ବହୁତ ଘି, ସିଙ୍ଗଡ଼ା, ମାଂସ ଖୁଆଇ ଗୋଟାଏ ବଡ଼ ପ୍ରତିପତ୍ତି କରିପାରିଥିଲା ସେ । ହଠାତ୍ ଦିନେ ସବୁ ବନ୍ଦ । କହିଲା ଘର କ'ଣ ହବ– ଘରଣୀ ନଥିଲେ ? ସେଇଠୁ ନିକା କଲା ବୁଧୁନିକୁ । ଗୋଟିଏ ମିନିଟ୍ ପରେ ବୁଧୁନି ତାର ବେଉସା ଛାଡ଼ି ହେଲା ରତିଫ୍‌ର ବିବିଜାନ୍ । କାନ ଫୋଡ଼େଇ ମୁଦି ଝୁଲେଇ ଦେଲା, ବେକରେ ହଁସୁଲି । ସମସ୍ତେ କହିଲେ– "ହେଡ଼ାଖାଇଟା ।"

ମଦ ଅଭ୍ୟାସଟା ରତିଫ୍‌ର ଥିଲା । ସେଲିମ୍‌ର ବି ଥିଲା । ହଠାତ୍ ଏମିତି ଦୁର୍ଯୋଗ ଘଟିଲା– ସେଲିମ୍ ମରମର, ରତିଫ୍ କଡ଼ାକ୍ରାନ୍ତି ଖରଚ କରି ଦେଖିଲା ଘରଡିହ ଛଡ଼ା ଆଉ କିଛି ନାହିଁ ।

ତା' ପରଠୁ ଦି'ଭାଇକି ଦି'ଭାଇ ଫକଡ଼ । କେତେବେଳେ କେମିତି କାହା ଗାଡ଼ିରେ କଚୁଆ ହୋଇ ପେଟ ପୋଷନ୍ତି ।

ସକିଲାର ପିଲା ହେବ । ଯିମିତି ରତିଫ୍‌କୁ ନୂଆ ଲାଗୁଛି । ଇମିତି କେବେ ତାକୁ ନୂଆ ଲାଗେନି । ଘର ଭିତରକୁ ଯାଇ ଡାକିଲା, "ସକିଲା, ସକିଲା !" ସକିଲା ଚାହିଁଲା । ସେ ନିର୍ବୋଧ ଭାବରେ କହିଲା– "ବଚ୍ଚା ହେବ ? କାଇଁ ତୁ ତ କେବେ କହିନୁ ମୋତେ ।"

ସକିଲା ଚାହିଁଲା; କି ଦୁଷ୍ଟ ନା ମୂରୁଖ ।

ସକିଲା ପାଟି କରୁଛି, କାନ୍ଦୁଛି, 'ଉଃ-ଉଃ-ଉଃ ।' ପାଖରେ ଜେନାବୁଢ଼ୀ ସୁଜି ପିଉସୀ ଶୂଳ ଧରୁଛି । ରତିଫ୍ ଦାଣ୍ଡ ପାଖରେ ବସିଛି, ଭାବୁଛି– କ'ଣ ହବ ?

ଟଳି ଟଳି ଆସିଲା ସେଲିମ୍ । ଖସିପଡୁଥିବା ଲମ୍ବ ଲମ୍ବ କଳା ନାଲି ହଳଦିଆ ଗାରଗାରିଆ ଲୁଙ୍ଗିକୁ ଧରି କହିଲା– କ୍ୟା ହୁଆ– ବଚ୍ଚା ୟା ବଚ୍ଚୀ ?

ରତିଫ୍ ନୀରବ । ଏକଦମ ଚୁପଚାପ୍ । ସେଲିମ୍ ଘର ଭିତରକୁ ଗଲା । ରତିଫ୍ ଦରପୋଡ଼ା ବିଡ଼ିଟାକୁ ଟାଣୁଛି ମନକୁମନ– ଧେତ୍ ଲିଭିଯାଇଛି– କେତେବେଳୁ ଲିଭି ଯାଇଥିଲା ।

ଜେନାବୁଢ଼ୀ ଡାକିଦେଲା– ସେଲିମ୍– ସେଲିମ୍– ରତିଫ୍–ରତିଫ୍– ଧାଇଁଆ– ରତିଫ୍ ।

ରତିଫ୍‌ର ନିଶା କଟିଯାଇଛି । ଉଦ୍‌ବେଗ ବଢ଼ିଯାଇଛି । ସେ ଉଠି ଠିଆହେଲା । ସେଲିମ୍ ଚିତ୍କାର କଲା– ବଚ୍ଚା ? ଦୌଡ଼ିଲା ରତିଫ୍ । ରକ୍ତରେ ପୂରିଯାଇଛି ଘରଟା । ଗୋଟିଏ ସଦ୍ୟଜାତ ଶିଶୁ । କି ସୁନ୍ଦର । ଜେନାବୁଢ଼ୀ କାନରେ ଫୁଙ୍କୁଛି, ନିଆଁରେ ତାପ ଦେଉଛି । କାହିଁ କାନ୍ଦୁନାହିଁ ତ ? ରତିଫ୍ ବରଫ ହୋଇଯାଇଛି । ସୁଜି ମାଉସୀ ଅବଶ ହୋଇପଡ଼ିଲା । ସେଲିମ୍ ଡାକୁଛି– 'ଭାବୀ' 'ଭାବୀ' ।

ସକିଲା ଢଳିଗଲା– ମଳା ଛୁଆଟାଏ ଜନ୍ମକରି ଢଳିଗଲା । ରତିଫ୍ ଚୁପ୍‌ହୋଇ ବସିଲା ଯାଇ ତା' ପାଖରେ । ଡାକିଲା, "ସକିଲା ସକିଲା ସକିଲା ।" ଯିମିତି ତା'ରି ଡାକରେ ସକିଲା ଜୀବନ ପାଇବ ! ମନ୍ତ୍ର ତାର ବ୍ୟର୍ଥ ହେଲା । ସକିଲା ଆଉ ଉଠିଲା ନାହିଁ । ଆଖି କପାଳରେ ଗୁଞ୍ଜିଦେଇ ସକିଲା ମରିଛି । ରତିଫ୍ ପାଇଁ କଣ ପୁଣି ଥରେ ଉଠି ବସିବ ସକିଲା ? ରତିଫ୍ ନିର୍ନିମେଷ ନୟନରେ ଚାହିଁ ରହିଛି ସକିଲା ଆଡ଼କୁ ।

ସକିଲାର ନିଜ ମା' ପେଟର ଭାଇ ହରିଦାସ କାନ୍ଦୁଛି ତା' ଘର ଭିତରେ। ତା' ସାଙ୍ଗରେ ସୁମତୀ ସକିଲାର ଭଉଣୀ, ଯାହାକୁ ସେଲିମ ନିକା କରିବାକୁ ମନ କଲାଣି। ତେବେ ସୁମତୀ ଏବେ ରାଉତ ଘର ବଡ଼ବୋହୂ ହେବାକୁ ଯାଉଛି।

ଚାନ୍ଦିପୁର ରାସ୍ତାର ଗୋଟିଏ ଗଳିରେ ଚାଲିଛି କଥାବାର୍ତ୍ତା– ଆହା, ଛୁଆଟା ମରିଗଲାରେ। ଖଣ୍ଡେ ଧଳା ଲୁଗା ଆଉ ଗୋଟାଏ କଫିନ। ମୌଲବୀ ଆସି ପ୍ରବୋଧ ଦେଲେ। ସେଲିମ୍ ସେତେବେଳେ ଯାଇ ଆବିଷ୍କାର କଲା, ରଡିଫ୍ ବସିଛି। ଆଖିରେ ଲୁହ ନାହିଁ। ଅନେଇଛି, ଏଇ ମାଂସ, ଏଇ ଦିହ ପାଇଁ କଣ ନ କରିଛି ସେ। କେତେ ଆଦର କରେ। କିନ୍ତୁ ମାଟିର କଣ୍ଢେଇ ମାଟିରେ ମିଶିବ ଶେଷକୁ। ବୁଧୁନୀକୁ ସେ ସକିଲା କରିଥିଲା। ସେ ହେଲା ମୁରଦାର।

ରଡିଫ୍ ହାତ ଦୁଇଟି ଆଗକୁ କାଢ଼ି ଠିଆହେଲା ମୌଲବୀ ଆଗରେ। କହିବାର କିଛି ନାହିଁ, ନିର୍ବୋଧ ଦୃଷ୍ଟିର ଭଙ୍ଗି। ଗୋଟାଏ କଫିନର ଖର୍ଚ୍ଚ– ଆଉ ଗୋଟିଏ ନୂଆ ଧଳା ଲୁଗା।

ଘରସାରା ଘୂରି ବୁଲିଲେ ବି ସେରକରୁ ଦି'ସେର ଚାଉଳ ମିଳିବା କଷ୍ଟକର। ପନିପରିବା କଥା ଛାଡ଼। ଏତକ ବାଡ଼ିର ଆମ୍ବଡ଼ା ବିକି ସକିଲା ଆଣିଛି।

ମୌଲବୀ କଫିନ ଆଉ ଖଣ୍ଡେ ଲୁଗାର ବନ୍ଦୋବସ୍ତ କଲେ। ସମସ୍ତେ ଦୟାକରି ଚାରିଅଣା ଛ'ଅଣା ଦେଲେ। ରଡିଫ୍ ସେତକ ଧରିଲା। ସେଇ ରାସ୍ତା ପାଖରୁ ମୋତିଗଞ୍ଜ କମ୍ ସେ କମ୍ ତିନିପା ବାଟ; ସେ ଉଠିଲା।

ପାଦକୁ ପାଦ ଆଗେଇ ଚାଲୁଛି। ଘରେ ସକିଲାର ମଲାଦିହ, ଲାସ୍। ଧୀରେ ଧୀରେ ଆଗଉଛି ରଡିଫ୍। ସକିଲା କେଡ଼େ ସୁନ୍ଦର। ଟିକିଏ ଠିଆହେଲା। ଅନେକ ବାଟ ଆଗେଇ ଆସିଛି।

"ଜୀଆ ବେକରାର ହାୟ– ଆଜା ମୋରେ ବାଲମା।" କିଏ ଏଇଟା– ମୂଷା ? କେଡ଼େ ସୁନ୍ଦର ପିଲାଟାଏ ସେ ଥିଲା। କେଡ଼େ ବଡ଼ ଘର। ବାପ ଚଉଦପୁରୁଷ ଜମିଦାର। ହାୟ ହତଭାଗା, ଏବେ କୋଠାରେ ଚୂନ ଲଗାଇବାକୁ ହୁଏତ ପଇସା ନାହିଁ। କାନ୍ଥରେ ଅଛି ଗୋଖର ସାପ– ଦିହରେ ଅଛି ଗନୋରିଆ ସିଫ୍‌ଲିସ୍‌ର କୀଟାଣୁ।

ମୂଷା ଫେରୁଛି ଦାରୁ ଦୋକାନରୁ । ସେଇ ରେଳଘର, ସେଇ ଟାଟିଘେରା । କେଡ଼େ ସୁନ୍ଦର ଲାଗେ । ଥରେ ଦେଖିଲେ ବି ଆହୁରି ଥରକୁ ଥର ଦେଖିବାକୁ ଇଚ୍ଛା ହୁଏ । ଆଖି ସାମନାରେ ରଖିବାକୁ ଆହୁରି ଲାଗେ ।

"ରତିଫ୍ ଭାଇ, ରହଁ...ଲୁ । ଆଜି ଯଉଁ ରେଟ୍‌ରେ । ପୁଣି ଭଜା, ବୁଟ ସିଜା, ଫାଷ୍ଟ୍ କିଲାସ ।"

ରତିଫ୍ କିଛି ଶୁଣିଲା ନାହିଁ । ଚାଲିଛି, ଛେଳି ଅନ୍ତର ଭଜା, ପୁଣି ଭଜା, ଖଣ୍ଡି ଖଣ୍ଡି ଲଙ୍କା, ଜୀରା, ଧଣିଆ ଗୁଣ୍ଡା, କି ମଜା ଖାଇବାକୁ । ଛଟାଙ୍କିଏ ଛଟାଙ୍କିଏ ସେଥିରେ ଆଉ ତା ସାଙ୍ଗକୁ ବୁଟ ସିଝା । ଆଳୁଚପ, ଆଃ କ୍ୟା ମଜା ! କ୍ୟା ତାରିଫ୍ !

ମୂଷା ଢଳି ଢଳି ଚାଲିଗଲା । ଇମିତି କେତେ ଯାଇଛନ୍ତି । ଇମିତି ଯିବେ । କଣ କହିଗଲା ସେ ? ପୁଣି ଭଜା, ବୁଟ ସିଝା ! ହାତ ଦି'ଟା ଅଣ୍ଟା ଉପରକୁ ଆସିଲା । ରହିଛି ସେଇଠି ପଇସା– ଖଣ୍ଡେ ଲୁଗା– ଆଉ କଫିନ ।

ଠିଆହେଲା ସେ । ନା, ଯିବ । ମୋତିଗଞ୍ଜ ବଜାର ଆଉରି କେତେ ଦୂର– ଆଗରେ ପୋଖରୀଟା । ଏଇଟା ଟପିଗଲେ ଆଉ ନନ୍ଦୀଘର ଛକଟା ପାରିହେଲେ ମୋତିଗଞ୍ଜ ବଜାର । ପୁଣି ଚାଲିଲା ।

"କୋନ ଯାତିନ ବେ– ରତିଫ୍– ବେ ରତିଫ୍ ।" ଗୋଡ଼ ଅଟକିଗଲା । ବଢ଼ିଆ ପୋସ୍ତର ଗନ୍ଧ । ବୁଟସିଝାର ବାସନା । ରତିଫ୍ ଫେରିଯାଇ ଦଉଡ଼ିଆ ଖଟ ଉପରେ ବସିପଡ଼ିଲା । ତା' ସାମନାରେ ଅବଦୁଲ ଧରିଲା– ଖଣ୍ଡି ଖଣ୍ଡି ମାଂସ ଭଜା ଆଉ ମଦ । ବିନା ଦ୍ୱିଧାରେ ରତିଫ୍ ପିଇ ଚାଲିଲା । ଅବଦୁଲ ଠିକ୍ ଜାଣେ ରତିଫ୍ ଅଣ୍ଟିରେ ପଇସା ଅଛି ।

ଆଜି ପିଇଯାଉଛି ପାଏ ପରେ ପାଏ । ସଞ୍ଜ ନଇଁ ଆସିଲାଣି । ରତିଫ୍ ଦେହଟାକୁ ଅଜାଡ଼ି ଦେଇଛି ଧୂଳିଧୂସର ଭୂଇଁ ଉପରେ । ସେଲିମ୍ ପହୁଞ୍ଚିଲା । ବିରକ୍ତ ହୋଇଯାଇଛି । ଭାଇକୁ ଖୋଜି ଖୋଜି ଆସୁଛି । ଘରେ ମୁରଦାର ପଡ଼ିଛି, ଉଠିନାହିଁ । ଗାଁବାଲା ଜମା ହେଲେଣି– ଦଫନ କଲା ଲୋକେ ।

"ରତିଫ୍ ଭାଇ! ରତିଫ୍ ଭାଇ!..." ରତିଫ୍ ଚାହିଁଲା, ମକରା ଅପେକ୍ଷା ନକରି ଗ୍ଲାସ୍‌ରେ ବଢ଼ାଇ ଦେଲା । ସେଲିମ୍ ସେତକ ପିଇଦେଲା ଏକ ଢୋକରେ । ପୁଣି ଆଉଥରେ...

× × ×

ମକରା ଚିତ୍କାର କଲା "ରତିଫ୍– ବେ ସେଲିମ୍, ଘରକୁ ଯା, ରାତିଅଧ ହେଲାଣି, ଯା'ବେ ।" ଦି'ଟାଙ୍କୁ ରାସ୍ତାକଡ଼ରେ ଠେଲି ଠେଲି ଠିଆ କଲା– ଦିହେଁ ଚାଲିଲେ, ଚାଲିଛନ୍ତି କୁଆଡ଼େ ଜଣାନାହିଁ ।

ଏଇ ଆଗରେ– ପ୍ରୁଫ୍ ଆଣ୍ଡ ଏକ୍ସପେରିମେଣ୍ଟର ଟ୍ରକ୍‌ର ଶବ୍ଦ । ରତିଫ୍ ସେଲିମ୍‌କୁ ଟାଣି ଆଣିଲା, ଦୁହେଁ ଖସିପଡ଼ିଲେ ରାସ୍ତାର ପଚ୍ଚ ଗଡ଼ିଆ ଭିତରକୁ ।

ସେତେବେଳେ ଘଡ଼ିରେ ବାଜୁଥିଲା ବାର । ସେମାନେ ସେଇ ପଚ୍ଚ ଗଡ଼ିଆରେ ପଡ଼ି ଏକ ସୁନିଦ୍ରାର ସନ୍ଧାନ ପାଇଥିଲେ ସେଦିନ ।



# ଆଖିର କଳା

ବିଜନ ତା କହୁଣିରେ ପେଲି କହିଲା– ହଇହେ କୁହ, ପୁଅହେଲେ ମୋତେ କଣ ଦେବ ?– ଆଉ ଝିଅ ହେଲେ ?

ମନ ଆଉ ମୁହଁ ତାର ଆନନ୍ଦରେ ପୂରି ଉଠୁଥାଏ । ଆଖି ତଳେ ଗରବିଣୀ ନାରୀର ଶତ ଆଶା ଗୁଞ୍ଜରି ଉଠିଥାଏ । ଅପରୂପା ହୋଇ ଉଠିଥାଏ ସେ । ତରଙ୍ଗ ତରଙ୍ଗ କରି ବେଦନା ଆଖିତଳେ ସ୍ୱପ୍ନ ରଚିଥାଏ ।

ମୁଁ କହିଲି– ପୁଅ ହେଲେ କ'ଣ ଦେବ, ଆଉ ଝିଅ ହେଲେ...

ସେ ତା'ର ଭାବନାର ଗତି ବଦଳାଇ କହିଲା– କୁହ ତ ପୁଅ ହେଲେ ଖୁସି ହବ ନା ଝିଅ ହେଲେ ?

ମୁଁ କହିଲି– ତମର ବୋଧହୁଏ ପୁଅ ହେଲେ ଖୁସି ହେବ, କିନ୍ତୁ ମୁଁ ଝିଅ– ଝିଅମାନେ ବାପାଙ୍କୁ ଭାରି ସ୍ନେହ ଶରଧା କରନ୍ତି ।

ସେ ମୋ ଆଗକୁ ଝୁଙ୍କିପଡ଼ି କହିଲା, ନାଇଁ, ମୋର ଝିଅ ହେଉ । ତାକୁ ମୁଁ କେତେ ରଙ୍ଗରେ ସଜାଡ଼ିବି । ତାର ପାଦରେ ନୂପୁର ଖଞ୍ଜିବି । ଆସିଲାବେଳେ ଗଲାବେଳେ ବାଜିଉଠିବ ନୂପୁର– ରୁଣ୍ ଝୁଣ୍ ଝୁଣ୍ ରୁଣ୍ ଝୁଣ୍ । ତାର ରକ୍ତ ପଦ୍ମପାଦ ଦୁଇଟିର କିରଣ ପାତରେ ଧରଣୀ ହୋଇ ଉଠିବ ରକ୍ତିମ ।

ଖାଲି ସେତିକି, ତାକୁ କେତେ ରଙ୍ଗର ମୁଣ୍ଡ ବାନ୍ଧିଦେବି । କେତେ ପ୍ରକାର ରିବନ୍ ମଥାରେ ଦେବି । ନୟନରେ କଳା କଜ୍ଜଳ ଲେପିଦେବି । କି ସୁନ୍ଦର ଦିଶିବ ସେ !

ଆଉ ସେ ନାଚ ଶିଖିବ । ଜାଣିଚ, ଆମ ଧୀରେନ୍‌ବାବୁଠାରୁ ନାଚ ଶିଖିବ । ଟିକିଏ ବଡ଼ହେଲେ ସୁନନ୍ଦା ପାଖକୁ ପଠାଇଦେବି ଯେ ସେ ଗୀତ ଶିଖିବ ।

ତାର ଗୀତ ପାଇଁ ଘରିଆଡୁ ପ୍ରଶଂସା ଆସିବ । ତମର ଓ ମୋର ସେମାନେ ମାଗିବେ ଅନୁମତି । ସେମାନେ କରିବେ ବିନତି । ନାଇଁ ମୋର ଝିଅ ହେବ । ଝିଅ

ମୋର ବଡ଼ ହେବ । କଲେଜରେ ପଢ଼ିବ, ଖୁବ୍ ପାଠ ପଢ଼ିବ । ହଁ, ସେ ଖୁବ୍ ପାଠ ପଢ଼ିବ ।

ଆଉ ଯେଉଁଦିନ ବାଜା ବାଜିବ, ଦୋଳମୁକୁଟ ପିନ୍ଧି ତାର ବର ଆସିବ, ମୁଁ ଶାଶୂ ହୋଇଯାଇଥିବି । ମୋର ଗାଲ ଶୁଖିଯାଇଥିବ । ଇସ୍ ତମେ ହେବ ଶ୍ୱଶୁର, ନା ? ତମେ ବରଣ କରିବ । ଛି, ତମେ କେତେଶୀଘ୍ର ବୁଢ଼ା ହୋଇଯାଇଥିବ । କେତେ ଶୀଘ୍ର– ତମେ ଫେର୍ ଶ୍ୱଶୁର ହେବ– ଇସ୍– ପାହିଗଲା ରାତି । କଟିଗଲା ତମସା । ବିଜନ ମୋ ପାଖରୁ ଛୋଟ ଚୁମାଟିଏ ଆଦାୟ କରି ଶେଯରୁ ଉଠିଯାଇ ବାହାରକୁ ଗଲା ।

ଷଠୀ ପୂଜାର ଆୟୋଜନ ଚାଲିଛି । ଦେବୀ ପୂଜାର ଆସରରେ ନହବତ ବାଜଣା ଗୁମୁରି ଗୁମୁରି ଉଠୁଛି । ମୁଁ ସେଇ ବାଜଣା ମାଙ୍ଗଳିକ ସ୍ୱରରେ ବାହାରର ବର୍ଷଣକ୍ଲାନ୍ତ ଆକାଶକୁ ଚାହିଁ କଳ୍ପନା କରୁଛି– ହେ ସୃଷ୍ଟିର ନାୟକ, ତମର କେତେ ବଡ଼ ବିରାଟ କଳ୍ପନା, ତମେ କେତେ ବଡ଼, ତମେ କେତେ ବିରାଟ । ସେଦିନ ଯେଉଁ କ୍ଷୁଦ୍ର କଳିକାଟି ବିକଶିବ– ମୋର ଏହି ଶଯ୍ୟାଧାରରେ ରାତ୍ରିର ପାହାନ୍ତାରେ ତାର ଛୋଟ ଛୋଟ ଆଙ୍ଗୁଳିରେ ମୋର ମୁହଁ ଏବଂ ଛାତିକୁ ରାମ୍ପୁଡ଼ି ଅଥୟ କରିବ, ମୁଁ ତାର ମୁହଁ ଉପରେ ଲକ୍ଷଚୁମା ଲଦି ଦେବି । ସେ ପରିସ୍ରା କରି ମୋର ବିଛଣା ଓଦା କରିବ ।

ତାହାର ଟିକିଏ ଦେହ ଖରାପରେ ମନ ହେବ ଶଙ୍କାକୁଳ । ମୋର ଅଲକ୍ଷ୍ୟରେ ମୁଁ ଆପେ ଆପେ ଯେପରି ମୋର ଡାହାଣ ପାଖର ତକିଆକୁ ଆଉଁଶୁଛି ।

ଅଷ୍ଟମୀଦିନ ବିଜନ କହିଲା, ଦୁଇଜଣ ମହାଷ୍ଟମୀ ବ୍ରତ ପାଳନ କରିବା କଥା । ପିଲାର ଭବିଷ୍ୟତ ହେବ ମଙ୍ଗଳମୟ; ଜାଜ୍ୱଲ୍ୟମାନ ।

ଆମେ ଦୁହେଁ ଆଗାମୀ ଶିଶୁର କଲ୍ୟାଣ ପାଇଁ କରିଥିଲୁ ମହାଷ୍ଟମୀ ବ୍ରତ ।

ଅଷ୍ଟମୀ ଦିନ ଦଶଟାବେଳୁ ଆରମ୍ଭ ହେଲା ଜ୍ୱର । ଦୁଇଜଣ ଅଜ୍ଞାନ ହୋଇପଡ଼ିଥିଲୁ । ଦଶମୀ ଦିନରେ ଦୁଇଜଣଙ୍କର ସଂଜ୍ଞା ଆସିଲା । ଦୁର୍ବଳ ହାତରେ ମୁଁ ବିଜନର ଦେହକୁ ପରୀକ୍ଷା କରିଥିଲି । ବିଜନ କିଛି ସମୟ ପାଇଁ ସଚେତ ହୋଇ ପୁଣି ଅଚେତ ହୋଇଗଲା ।

ଆଠଦିନ ପରେ ଯେତେବେଳେ ତାର ଜ୍ୱର ଛାଡ଼ିଲା, ତାର ମନରେ ହୋସ୍ ଆସିଲା । ସେ କହିଲା– କଣ ଅଷ୍ଟମୀ ଭୋଗ କଲ ନାହିଁ ? ପିଲାର ଦେହ କୁଶଳ କିପରି ରହିବ କହୁନ– ଆହେ ଯାଅ ।

ଡାକ୍ତର କହିଲେ ଆଠଦିନ ହେଲା ଅଷ୍ଟମୀ ପାର ହୋଇଗଲାଣି । ବିଜନ କାନ୍ଦି ଉଠିଲା । ଅଳ୍ପ ସମୟ ପରେ ନର୍ସ ଡାକିବାକୁ ପଡ଼ିଲା । ଦୁଇ ଘଣ୍ଟା ପରେ ମୋର ଶଯ୍ୟାଧାରରୁ ଲକ୍ଷ୍ୟ କଲି ପଞ୍ଚାଏ ଲୋକ କୋଡ଼ି ଧରି ଯିବାଆସିବା କରୁଛନ୍ତି ।

ମୁଁ ମୋର ଦୁର୍ବଳ ଚରଣ ପାତରେ ଠିଆହେଲି । ଧୀର ପଦକ୍ଷେପରେ ପାଖକୁ ଗଲି ।

ନା– ବିଜନର କଥା ଠିକ୍ ହୋଇଛି ।

ଝିଅଟିଏ ହେଇଛି– ଭାରି ସୁନ୍ଦର ହୋଇଛି । ତାର ନୟନର କଳା କଜ୍ଜଳରେଖା ଠିକ୍ ମୋରି କଳ୍ପନା ପରି ସୁନ୍ଦର । ଠିକ୍ ମୋରି କଳ୍ପନା ପରି ମଧୁର । ସୁନ୍ଦର ଗୋଲ ଗୋଲ ତା'ର ବଳିଲା ହାତ । ବିଜନଠାରୁ ସେ ଅନେକ ସୁନ୍ଦର ।

ମୁଁ ଆଣ୍ଠୁମାଡ଼ି ବସିଲି । ମଥା ମୋର ଦୁର୍ବଳତାରେ କଣ ହୋଇଗଲା । ଆଉ କିଛି ଜାଣେ ନାହିଁ ।

ମୋର ଦୁର୍ବଳତାର ଘରିଘଣ୍ଟାରେ ଅଶୁଭ ସମୟ ବିତିଗଲା । ମୋର ମନେ ହେଲା ଏଇ ତ କାହାର ଡାକ ଶୁଭୁଛି । ତାର କୁଆଁ କୁଆଁ ଡାକ ମୋ କାନକୁ ଯେପରି ଆସୁଛି । ମୁଁ ଯେପରି ଶୁଣିପାରୁଛି ।

ଆନନ୍ଦରେ ମୋର ଛାତି ଭିତରେ ଯେପରି ଲକ୍ଷେ ଶତଦଳ ଚେଇଁଉଠିଲା । ମୁଁ ଜୋର୍‌ରେ ଆଉ ଶାନ୍ତିରେ ଯେପରି ନିଶ୍ୱାସ ମାରିଲି ।

ହାୟ 'ବିଜନ'ର ସ୍ୱପ୍ନ ସଫଳ ହୋଇଛି । ମୁଁ ଏଥର ବିଜନ ପାଖକୁ ଗଲେ ଦେଖିବି । ବିଚରୀ କି ଆଶ୍ୱସ୍ତିରେ ନିଶ୍ୱାସ ମାରିଥିବ । ତାର ତିଆରି ଜିନିଷ– ତାରି ସୃଷ୍ଟିରେ ତାର ହୃଦୟ ପୂରି ଉଠିଥିବ । ମନ ଭିତରେ ଜଳି ଉଠିଥିବ ଉନ୍ମାଦନା– ପରିକଳ୍ପନା– କେତେ ? କେତେ ? କେତେ ସେ ?

ଅସ୍ଥିର ଚରଣ ପାତରେ ମୁଁ ବିଜନର ଶୋଇବା ଘରକୁ ଗଲି । ଦୁଆର ମୁହଁରୁ ଦେଖିଲି ବିଜନ ତାହାର ଡାହାଣ ପାଖରେ ଛୋଟ ତକିଆଟିଏ ରଖି ତା' ଉପରେ ହାତ ଚଳାଉଛି ଧୀରେ ଧୀରେ ଆଉ ନୟନରୁ ବୋହିପଡୁଛି ଲୋତକ ।

ମୁଁ ଫେରିଆସି ଶୋଇଲି । ଆଜି ମୁଁ ବେଶ୍ ଚଲବୁଲ କରିପାରୁଛି । ହେଲେ ଅଲକ୍ଷ୍ୟରେ ପ୍ରତିଦିନ ତେଲନଦୀର ସେଇ ବାଲି ଅତଡ଼ା ଭିତରେ ମୋର ଆଖିର କଳାକୁ ଖୋଜି ବୁଲୁଛି । ଖୋଜିବୁଲୁଛି ଅତୀତର ସେଇ ଦିଓଟି କୋରକ– ସେଇ...

ଆଉ ଘରେ ଆସି ଦେଖୁଛି ବିଜନ ଯେଉଁ ଛୋଟ ଛୋଟ ମୋଜା, ସୁଇଟର, ଟୋପି କରିଥିଲା ତାହାକୁ ଛାତିରେ ଜାକିଛି– ଆଉ ଆଖିରୁ ଲୁହ ଝରିପଡୁଛି ।



# ଏକ ପ୍ରେମର ଇତିକଥା

ଆମେ ଦୁଇଜଣ କଞ୍ଚନାକୁ ପ୍ରେମ କରୁଥିଲୁ । ଶ୍ରୀକାନ୍ତ ଓ ମୁଁ ପ୍ରାୟ ଏକ ସମୟରେ କଞ୍ଚନା ଘରେ ରହି ଦୁର୍ବିସହ ଦ୍ୱିପ୍ରହର ଏବଂ ଅସହଣୀୟ ରାତ୍ରିଗୁଡ଼ିକ କଟାଉଥିଲୁ । କଞ୍ଚନା ଆମ ପ୍ରତି ସଦୟ ଥିଲା କହିଲେ ଯଥେଷ୍ଟ ହେବ ନାହିଁ । ଆମେ ଦୁଇଜଣ ତାକୁ ଖୁବ୍ ଉଚ୍ଚ ପର୍ବତ ଶିଖରକୁ ନେଇଯାଇଛୁ । ସେ ତାର ଦରଭଙ୍ଗା ସୁରରେ ଦାଦରା ଗାଇଲା ବେଳକୁ ଆମେ ପ୍ରାୟ ଉଲଗ୍ନ ହୋଇ ନାଚିଛୁ । ଶ୍ରୀକାନ୍ତ ଓ ମୁଁ ସବୁ ଉପଲବ୍ଧି କରିଛୁ ।

ହଠାତ୍ ମୁଁ ଜ୍ୱରରେ ପଡ଼ିଲି ସାତଦିନ । ଦେହକୁ ସଜାଇ ଯେଉଁଦିନ କଞ୍ଚନା ଘରେ ମୁଁ ପହୁଞ୍ଚେ କଞ୍ଚନା ପ୍ରଥମେ ପ୍ରଶ୍ନ ପଚାରିଲା– ତମକୁ ମୋତେ ବିବାହ କରିବାକୁ ହେବ ।

କଞ୍ଚନାକୁ ମୁଁ ବିବାହ କରିବାକୁ ବା ନ ଖୋଜନ୍ତି କିପରି ? ବନଜ ଫୁଲର ବାସ୍ନାଠାରୁ ସେ ସରସ । ମୋର ପ୍ରାଣର ତୁଳସୀ । ମୁଁ କହିଲି, ଦେଖ କଞ୍ଚନା, ତମକୁ ମଧ୍ୟ ମୋତେ ବାହା ହବାକୁ ବହୁଦିନ ଆଗରୁ କହିଥାନ୍ତି । କାଳେ ଶ୍ରୀକାନ୍ତ ତମ ଆଡ଼େ ନଜର ପକାଇ ବିବାହ କରିବାକୁ ଅଡ଼ିବସେ ।

କଞ୍ଚନା କିନ୍ତୁ କହିଲା– ବାସ୍ତବିକ ତମକୁ ଛାଡ଼ିବାଟା ମୋ ନିକଟରେ ଅସମ୍ଭବ ହୋଇ ଉଠିବ । ମୁଁ ଜାଣୁଛି ତମର ଅର୍ଥନାହିଁ । ତେବେ ଖବରକାଗଜ, ପତ୍ରପତ୍ରିକା, ବହି ଛପେଇ କିଛି ନାମ କରିଛ ।

କହିଲି– ଶ୍ରୀକାନ୍ତର ଅର୍ଥ ଅଛି, ପ୍ରଶସ୍ତି ମଧ୍ୟ ଅଛି । କଞ୍ଚନା କହିଲା– ତେବେ ଶ୍ରୀକାନ୍ତର ଅର୍ଥକୁ ବିବାହ କରିବାକୁ କହୁଚ ?

ମୁଁ ବୁଝାଇ କହିଲି– ମୋର କଥା ତମେ ବୁଝୁନାହଁ । ବିବାହ କରିବାକୁ ଗଲେ ସବୁ ଜିନିଷ ପରି ମାପଚୁପ କରି ବାଟ ଚାଲିବାକୁ ହେବ । ଠିକ୍ ତଉଲାତଉଲି କରି ଇଞ୍ଚ କାଠିରେ ମାପିବାକୁ ହେବ । ଖାଲି ଏପରି ଗୋଟାଏ ସିଦ୍ଧାନ୍ତରେ ପହୁଞ୍ଚିଗଲେ ତ ହେବ ନାହିଁ ।

କଳ୍ପନା କହିଲା– ସବୁ ଜିନିଷ ମାପିଚୁପି ଦେଖିବାକୁ ପଡ଼େନା । ଏଇଟା ଗୋଟାଏ କକ୍‌ଟେଲ ପାର୍ଟି ନୁହେଁ । ତମେ ଗୋଟାଏ Soft-corner– ହୃଦୟ ଭିତରେ ଛାପା ସ୍ନେହ-ପ୍ରିୟା-ପ୍ରେମ-ଉକ୍ତିକୁ କଣ ସ୍ୱୀକାର କର କି ନା ?

ମୁଁ କହିଲି– ଦେଖ କଳ୍ପନା, ଶ୍ରୀକାନ୍ତ ଓ ମୁଁ ତମକୁ ଭଲପାଉଥିଲୁ । ତମକୁ ତ ସମାନ ପରିମାଣରେ ଉପହାର– ପାର୍ଟି ବୁଲାଇବା ଦିଆ ହୋଇଛି । ମୋର ଆମ୍ବାସଡ଼ାର ଗାଡ଼ିରେ ଯେତେଦିନ ବୁଲିଛ, ଶ୍ରୀକାନ୍ତ ବି ଆମ ସାଙ୍ଗରେ ବୁଲିଛି । ତେବେ ତମେ କେଉଁଠାରେ ମୋର ହୃଦୟର ଅଧିକ ପ୍ରତିଧ୍ୱନି ପାଇଲ ? ସେଥିପାଇଁ ତମେ ତମର ଏଇ ଭାବପ୍ରବଣତାକୁ ବାଦ୍ ଦେଇ ଆମକୁ ଏକ ପାତ୍ରରେ ଭଲପାଇନାହଁ । ଅର୍ଥାତ୍ ଆମ ଭିତରେ ତମେ ଏକ ପାର୍ଥକ୍ୟ ସୃଷ୍ଟି କରିବାକୁ ଚେଷ୍ଟା କରିଛ । ଏହାହିଁ ବୋଧହୁଏ ତମର ଉଦ୍ଦେଶ୍ୟ– ଗ୍ଭଲବାଜି । ଆଉ କ'ଣ ହୋଇପାରେ ଏବେ କୁହ ।

କଳ୍ପନା କିଛିକ୍ଷଣ ଚୁପ୍ ରହି କହିଲା– ବେଶ୍ ମୋର ସମାଧାନ କରିଦିଅନ୍ତୁ । ନହେଲେ ମୋତେ ଅନ୍ୟତ୍ର... ।

ମୁଁ କହିଲି– ଦେଖ, ଅନ୍ୟତ୍ରର ପ୍ରଶ୍ନ ଉଠୁନାଇଁ । ଦୁଇଜଣଙ୍କ ଭିତରୁ ତମକୁ ଜଣକୁ ବାଛିନେବାକୁ ହେବ ।

କଳ୍ପନା କହିଲା– ତେବେ କ'ଣ କରାଯିବ ?

ତା'ପରେ ଶ୍ରୀକାନ୍ତ ଆସିଲା । ମୁଁ ବସିଲି ଏବଂ କଳ୍ପନା ବସିଲା । କିଏ ବିବାହ କରିବ ? ଶ୍ରୀକାନ୍ତ କହିଲା– ଦେଖ କଳ୍ପନା ! ତୁମେ ଯେମିତି ଅବିବାହିତ ରୁହ, ଆମେମାନେ ମଧ୍ୟ ରହୁ । ଜୀବନଟା ବିତିଯାଉ ।

କଳ୍ପନା କିନ୍ତୁ ଅଟଳ । ମାତୃତ୍ୱ ତାର ଲୋଡ଼ା । ସେ ସ୍ପଷ୍ଟ କରି କହିଲା, ଦେଖ, ତୁମେମାନେ ବୁଲିଛ, ମୁଁ ବୁଲିଛି । ଦେଶ-ଦେଶ ପ୍ରାନ୍ତର-ପ୍ରାନ୍ତର ବୁଲାଇ ନେଇଛ । କକ୍‌ଟେଲରେ ନାଚିଛି । ଗୀତ ଗାଇଛି । ସେଇଟା କଣ ତୁମେ ଭାବ ଯଥାର୍ଥ, ଶ୍ରେଷ୍ଠ ?

ମୁଁ କହିଲି ଚମତ୍କାର ତମେ ତେବେ ବୁଝିପାରୁଚ । ଏ ପୃଥିବୀ ଉପରକୁ ସ୍ପୁଟନିକ ଉଠିସାରିଲା ପରେ ତମେ କ'ଣ ସେଇ ବିବାହ କଥା– ଝାଡ଼ଖଣ୍ଡରୁ ଗଣତନ୍ତ୍ରରୁ ଆସି କଂଗ୍ରେସ ସଂଖ୍ୟାଗରିଷ୍ଠ ହୋଇ ଶାସନ କରିବା କଥା, ତମେ କଣ ଚିନ୍ତା କରିପାରୁଚ କଳ୍ପନା ।

ଶ୍ରୀକାନ୍ତ କହିଲା– ଦେଖ କଳ୍ପନା, ସରକାରଙ୍କର ଯୋଜନା ପରି ତମର ସବୁକଥା ତମେ ବୁଝି ମଧ୍ୟ ଭାଙ୍ଗିଯାଇଛ । ତମର ସିଗାରେଟ ଖାଇବା ଦରକାର । କାରଣ ସେଇଟା ତମକୁ ଲାଘବ କରିବ ।

କଳ୍ପନା କିନ୍ତୁ ଅଚଳ ଓ ଅଟଳ । ସେ ରୀତିମତ ଧରି ବସିଲା, ସେ ବିବାହ କରିବ, କରିବ– କରିବ ।

ସେ ସ୍ପଷ୍ଟକରି କହିଲା– ଦେଖ ତମେ ନାରୀ ସଙ୍ଗରେ ମିଶିଛ, ଗାଇଛ, ବୁଲିଛ । କିନ୍ତୁ ହୃଦୟ କଥା କେବେ ବୁଝିବାକୁ ଚେଷ୍ଟା କରିଛ ? ଜାଣିବାକୁ ଚେଷ୍ଟା କରିଛ, ନାରୀ ହୃଦୟରେ ଆପଣାକୁ ପାଇବାର କି କ୍ରନ୍ଦନ ! ବିବାହ କରିବାକୁ ହେବ ମୋତେ ।

ମୁଁ ଓ ଶ୍ରୀକାନ୍ତ ପ୍ରାୟ ସପ୍ତାହକାଳ ଚିନ୍ତା କଲୁ । ରାଶି ରାଶି ସିଗାରେଟ ଖାଇଲୁ । ହାତ ଦେଖାଇଲୁ । ଲଟେରି ଖେଳିଲୁ । କିଛି ଫଳ ହେଲା ନାହିଁ । କଳ୍ପନା ବିବାହ କରିବ । ସେ ଜିଦ୍ ଛାଡ଼ିବାକୁ ନାରାଜ ।

ଏହାପରେ ଶ୍ରୀକାନ୍ତ ଓ ମୁଁ ବସି କଳ୍ପନାକୁ ଡାକି କହିଲୁ ଯେ ସେ ତାର ସମାଧାନ ଯେମିତି ଶୁଣିଯାଏ । କଥାହେଲା କଳ୍ପନା ଲଟାରି କରିବ । ଯାହା ନାମରେ ଉଠିବ ତାକୁ ବିବାହ କରିବାକୁ ହେବ । କିନ୍ତୁ କଳ୍ପନା ଜଣାଇଦେଲା ଯେ ଆଉ ଗୋଟିଏ କଥା ଗୋପନୀୟ ତାର ଅଛି, ସେଇଟା ମଧ୍ୟ ଲଟାରି କରିବ । ଯାହା ଭାଗ୍ୟରେ ଯାହା ହେବ । ଶ୍ରୀକାନ୍ତ ଓ ମୁଁ ରୀତିମତ ଦୁଇଟା ବଣ୍ଡ୍‌ରେ ଦସ୍ତଖତ କରିଦେଲୁ ।

ଲଟାରି ହେଲା । ଜିତିଲା ଶ୍ରୀକାନ୍ତ । ଶ୍ରୀକାନ୍ତ କଳ୍ପନାକୁ ବିବାହ କରିବ ଆଉ ମୁଁ ସବୁ ଆୟୋଜନ କରିବି ।

ଦ୍ୱିତୀୟ ଲଟାରି ହେଲା । ମୁଁ ଜିତିଲି । କଳ୍ପନା ଦୁଇଜଣଙ୍କ ସାକ୍ଷାତରେ କହିଲା ଦ୍ୱିତୀୟ ଥର ଯେଉଁ ଲଟାରିରେ ଫଇସଲା ହେଲା ସେଥିରେ ମୋର ଭାବୀ ସନ୍ତାନର, ମାନେ ଏବେ ମୋର ଛଅମାସ ଚାଲୁଛି, ତା'ର ଅଧିକାରୀ ହେଲି ମୁଁ ।

କଥାଟା ମୋତେ ଅବାଞ୍ଛନୀୟ ବୋଲି ମନେ ହେଲା । କଳ୍ପନାକୁ ମୋଟେ କେବେ ସେପରି ଅବସ୍ଥାରେ ତ ମୁଁ ପାଇନାହିଁ ? ଅନ୍ତଃସତ୍ତ୍ୱା ହେଲା କିମିତି ମୋ ଆଡୁ ସେ । ହୁଏତ ଶ୍ରୀକାନ୍ତ କେବେ କେଉଁ ମୁହୂର୍ତ୍ତରେ ! ଆଉ ସେଇଟା ଏପରି ଭାବରେ ମୋ ଉପରେ ଦାୟିତ୍ୱ ଦେବାଟା କଣ ଉଚିତ ଥିଲା ?

କଞ୍ଚନାର ବିବାହ ହୋଇଗଲା । ମୁଁ ସମସ୍ତ କାମ ନିଖୁଣ ଭାବରେ ଚଳାଇଛି । ଶ୍ରୀକାନ୍ତ ବର ହୋଇ ମୋଟରରେ ଗଲାବେଳେ ମୁଁ ଠିକ୍ ତା ପାଖରେ ବସି ଯାଇଛି ।

ବିବାହ ହେଲାପରେ ଶ୍ରୀକାନ୍ତ ଓ ମୁଁ ପୁଣି ସେଇ ଏକ କୋଠରିରେ ରହିଲୁ । କଞ୍ଚନା ଏଥିରେ ପ୍ରତିବାଦ କରିଥିଲା ।

ଶ୍ରୀକାନ୍ତ କିନ୍ତୁ ଯୁକ୍ତି କରିନାହିଁ । ସେ କହିଲା ବିବାହ ତ ହେଲା, ବନ୍ଧୁତ୍ୱ ସଙ୍ଗରେ ବିବାହର ବା କଣ ସମ୍ବନ୍ଧ ?

ଏହାପରେ କଞ୍ଚନା କିଛିଦିନ ତାର ଜଣେ ସମ୍ପର୍କୀୟ ଘରକୁ ଯାଏ । ଶ୍ରୀକାନ୍ତ ଗଲା ବମ୍ବେ ।

ମୁଁ ଏକ ନୀରବ କୋଠରିରେ ବସିଛି । ପେଗ୍ ପେଗ୍ କରି ବୋତଲଟା ନିଃଶେଷ କରିସାରିଛି ।

ମୁଁ ଅନୁମାନ କରୁଛି ଗୋଟାଏ ନାରୀମୂର୍ତ୍ତି ମୋ ପାଖରେ ଠିଆ ହୋଇଛି–

କିଏ କଞ୍ଚନା– ତମେ କେତେବେଳୁ ?

ସେ କହିଲା ଅବିଚଳିତ ଭାବରେ, ତମେ ମୋର ଜୀବନଟାକୁ ନଷ୍ଟ କରିଦେଲ । ପ୍ରେମ ଦେଲ, ସ୍ନେହ ଦେଲ, କିନ୍ତୁ ଗୋଟାଏ କ୍ଷୁଧିତ ନାରୀକୁ ବାହୁ ତଳେ ଜାକି ଦିନେ ପରଶ ଦେଇପାରିଲ ନାହିଁ– ନପୁଂସକ ।

ମୁଁ ନିଶାରେ ଢୋଳି କହିଲି– କ'ଣ କହୁଚ କଞ୍ଚନା ? ପାଗଳ ପରି ତା'ର ସମସ୍ତ ଶରୀରଟା ମୋ ଦେହ ଉପରେ ବିଛାଇ ଚିପି ଧରି କହିଲା– ଏଇଆ–ଏଇଆ–ଏଇଆ ।

ତା'ପରେ ମୁଁ ତାକୁ ଠେଲିଦେଇ କହିଲି– ଗୋଟାଏ ଦେହପାଇଁ ଏତେ ଖେଳ । ମାନୁଚି, ବାସ୍ତବରେ ରକ୍ତମାଂସର ପ୍ରେମ– ବଡ଼ ପ୍ରେମ । କିନ୍ତୁ ସେଇଟା କ'ଣ ତମ ଆଖିରେ ସବୁଠାରୁ ଶ୍ରେଷ୍ଠ, ମହୀୟାନ । ମଦ ଆଉ ଏଇ ଯୌନପ୍ରବୃତ୍ତି ଦୁଇଟା ସମାନ । ଆମେ ମଦ ଖାଉ, ଭୁଲିଯାଉଚୁ । ସ୍ପୁଟନିକ୍ ଉଡ଼ିଲା ପରେ ଏ ରକ୍ତମାଂସର କଥା କିଏ ପଚାରୁଛି ? ଚନ୍ଦ୍ର ମଙ୍ଗଳରେ ଜମି କିଣା ଚାଲିଛି । ସେଇ ଗତାନୁଗତିକ ଭାବରେ– କ୍ଷୁଧିତ ହରିଣୀ ପରି– ଆଉ ଏକ ବୁଭୁକ୍ଷିତ ଅତୃପ୍ତ ଆତ୍ମାରେ ଜୋରରେ ଚେୟାର ଏବଂ ସୁରାଇ ପ୍ରଭୃତି ମୋ ଉପରକୁ ପକାଇଲା । ସେଥିରେ ମୁଁ

ଜ୍ଞାନ ହରାଇଥିଲି, ଠିକ୍ ତାର ଆଠଘଣ୍ଟା ପରେ ଯେତେବେଳେ ଜ୍ଞାନ ଆସେ, ମୁଁ ଦେଖେ ଶ୍ରୀକାନ୍ତ ବସିଛି ପାଖରେ ଏବଂ ପୋଲିସ୍ ।

ସେମାନେ ପ୍ରଶ୍ନ କଲେ– ଆପଣ କଳ୍ପନା ଦେବୀଙ୍କୁ ଆଘାତ କଲେ– କେତେବେଳେ ? ମୁଁ କଠିନ ହୋଇ କହିଲି– କଣ ଚାହୁଁଛନ୍ତି ଆପଣ ? କାହିଁ କଳ୍ପନା ସହିତ ମୋର ତ କାହିଁ କେବେ ଖରାପ ସମ୍ବନ୍ଧ ଘଟି ନାହିଁ ।

ଶ୍ରୀକାନ୍ତ କହିଲା– କଳ୍ପନା ମରି ପଡ଼ିଥିଲା ତୋ'ରି ଘରେ ।

ମୁଁ ଉଠିବସି କହିଲି– ନା କଳ୍ପନା ମରି ନପାରେ । ସେ ମରିବ ନାହିଁ । ମରିବ ନାହିଁ ।

ସେମାନେ କହିଲେ– ବ୍ୟସ୍ତ ହେବେ ନାହିଁ ପୋଷ୍ଟମର୍ଟମକୁ ଯାଇଛି । ତା'ପରେ ସବୁ ଜଣାପଡ଼ିବ ।

ମୁଁ ଓ ଶ୍ରୀକାନ୍ତ ସିଗାରେଟ ଖାଇଲୁ ଅନେକ ସମୟ । କଳ୍ପନା କିପରି ମଲା ବାସ୍ତବିକ ମୁଁ ମଧ୍ୟ ଭାବିପାରୁନାହିଁ ।

ପୋଷ୍ଟମର୍ଟମରେ ଯାହା ଫଳ ହେଲା, ସେଥିରେ ମୁଁ ଥାନାରୁ ଫେରିଆସିଲି ସିଧା । ମୁଁ ଓ ଶ୍ରୀକାନ୍ତ କଳ୍ପନାର ଡାଏରି ଦେଖିବାକୁ ଗଲୁ । ବହୁ କାଗଜପତ୍ର ଖୋଜିଲା ପରେ ମିଳିଲା ଗୋଟାଏ ଟୁକୁରା କାଗଜ, ସେଇଟା ଗୋଟାଏ ପ୍ରେସ୍କ୍ରିପସନ୍ । ତାକୁ ଧରି ବାହାରିଲୁ ଆମେ । ସହରର ଉପକଣ୍ଠର ଏକ ଜନଗହଳି ବିହୀନ କ୍ଷୁଦ୍ର ଗଳିରେ ରହିଛି ଖପରଲି ଘର । ଘର ଆଗରେ ଦରଲିଭା ସାଇନ୍‌ବୋର୍ଡ଼ ।

ଡାକ୍ତର ଆମକୁ ଦେଖି କହିଲେ– କଳ୍ପନାର ଖବର କ'ଣ ? ଆମେ ବହୁ ପ୍ରଶ୍ନ ପଚାରିଲୁ ? ସେ କହିଲେ ମୁଁ ଆଜକୁ ଛଅମାସ ଆଗରୁ ତାର ରୋଗ କଥା କୁହେ, ସେତେବେଳେ ସେ ବିବାହ କରିବାକୁ ଅନୁମତି ଚାହିଁଥିଲା । ପଚାରିଲି– ରୋଗଟା ତାର କଣ । ସେ ହସି କହିଲେ 'ଟିଉମର' ।

ଶ୍ରୀକାନ୍ତ ଓ ମୁଁ ଆଜି ତାର କବର ପାଖକୁ ଯାଇ କହିଲୁ– କ୍ଷମା କରିବ କଳ୍ପନା, ଯାହା ଆଶା କରିଥିଲ ଆମେ ତ ତାହା ବୁଝିପାରି ନଥିଲୁ । ଆମେ ତମକୁ ଦେଇ ମଧ୍ୟ ପାରିଲୁ ନାହିଁ । ତମେ କ୍ଷମା କରିବ ।



# ମା ଉଜଳାମୁଖୀ ବସ୍ ସର୍ଭିସ୍

ଜଙ୍ଗଲପଥରେ କର୍କଶ ନିନାଦ କରି ଉଜଳାମୁଖୀ ବସ୍ ଚଲେ । ସମୟ ତାର ଠିକ୍ ନଥାଏ । କାରଣ ଏ ବସ୍‌ରେ ଚଢ଼ି ଟ୍ରେନ୍ ଧରିବାର ଆଶା ନଥାଏ ବା ନିର୍ଦ୍ଦିଷ୍ଟ ସ୍ଥାନରେ ଏହା ଯେ ଠିକ୍ ସମୟରେ ପହଞ୍ଚିବ ତାର ସ୍ଥିରତା ମଧ ନଥାଏ ।

ତଥାପି ଦରବାର ଶାସନରେ ବହୁପୂର୍ବରୁ ମୟୂରଭଞ୍ଜର ଏକ ରାସ୍ତା ଉପରେ ବସ୍‌ର ଚକ ଗଡ଼ି ଗଡ଼ି ଆସୁଛି ।

ବସ୍‌ଟି ଗୋଟିଏ ପରିବ୍ରାଜକ ପକ୍ଷରେ ବେଶ୍ କୌତୂହଳପ୍ରଦ । ଗାଡ଼ିଟିର ଅତୀତରେ କି ରଙ୍ଗ ଥିଲା ତାହା ବୁଝିବା ମୁସ୍କିଲ । ତେବେ ସିନ୍ଦୂର ଭିତରୁ ଛାବଲାଏ ସବୁଜ ରଙ୍ଗ ଠାଏ ଠାଏ ଦିଶେ । ସେତିକିରେ ମନେହୁଏ ଯେ ଏଇଟା ସବୁଜ ରଙ୍ଗର ଥିଲା । କିନ୍ତୁ କାଳକ୍ରମେ ସିନ୍ଦୂର ନେସି ନେସି ସେଇ ରଙ୍ଗଟା ଲୁପ୍ତପ୍ରାୟ । ଗାଡ଼ିଟିର ଦୁଇପେଟ ପାଖରେ ଜିଭ ଲହ ଲହ କରୁଥିବା ଦୁଇଟି ଭୟଙ୍କର ଦେବୀ ମୂର୍ତ୍ତି । ସେମାନେ ମା ଉଜଳାମୁଖୀ । ମୋଟର ଚାଳକ ନିଜେ ପୁରୋହିତ ଏବଂ ଘରେ ଏହି ଉଜଳାମୁଖୀଙ୍କର ଘଟ ବହୁଦିନରୁ ସ୍ଥାପିତ ବୋଲି ସେ ଅଞ୍ଚଳରେ ସେ ପରିଚିତ । ତା'ଛଡ଼ା ସେ ନିଜେ ମୋଟର– ଏହି ହାଫଟନ୍ ଗାଡ଼ିଟିର ମାଲିକ । ପୋଷାକଟି ଗୈରିକ ବସନ ଏବଂ ମୁହଁରେ ଗୋଛାଏ ଦାଢ଼ି ।

ଉଜଳାମୁଖୀ ବସ୍‌ଟି ଆସିଲାବେଳେ ପାଖଆଖ ଗାଁର ଆଦିବାସୀ ହାଟୁଆମାନେ ହାତଯୋଡ଼ି ଠିଆ ହୁଅନ୍ତି । କାହାର ପୂଜାପଣା, ଝିଅ ପଠାଇବା, ବୋହୂ ଆଣିବାର ଥିଲେ ହାତ ନ ଉଠାଇ ରାସ୍ତା ଧାରରେ ହାତଯୋଡ଼ି ଠିଆ ହୁଏ । 'ଚାଳକ ଜାଣିପାରେ ଦୂରରୁ । ସେ ତାର ମାମଲା ବଢ଼ାଇବା ପାଇଁ ଗାଡ଼ି ଛୁଟାଏ । ଗାଡ଼ିର ବଡ଼ି– ଫୁଟବୋର୍ଡ଼– ଇଞ୍ଜିନ୍ ଯେପରି ଏକ ଅସମତାଳରେ ଥରି ଉଠେ । ମୁଣ୍ଡଟା ଛାତ ଉପରେ ବାଜିବାର ଭୟ ମଧ ଅଧିକ । ଗାଡ଼ିଟା ଘସ୍ ଘସ୍ କରି ଏକା ସାଙ୍ଗରେ ପୁଟ୍ ଓ ହେଣ୍ଡ ବ୍ରେକ୍ ଦେଇ ଛିଡ଼ାହୁଏ ଭକ୍ତ ଆଗରେ । ଆଉ ମା ଉଜଳାମୁଖୀ ରେଡ଼ିଓ୍ୱାଟରରୁ ଧକ୍–ଧକ୍– ଫୋଁ–ଫୋଁ ନିଶ୍ୱାସ ଛାଡ଼ନ୍ତି । ପୂଜାପାର୍ବଣ ସରିଯାଏ । ଗାଁଟାଯାକର ଗୁଣ୍ଡ ହୋଇଥିବା

ଭକ୍ତ ଜନତା ପ୍ରଣାମ ଜଣାଏ, ସିନ୍ଦୂର ପିନ୍ଧେ, ନଡ଼ିଆ ଭୋଗ ଦିଏ । ପୁଣି ଚାଲେ ଘସ୍ ଘସ୍ ଗଗନପବନ ଥରାଇ ।

ଯାତ୍ରୀଙ୍କଠାରୁ ଭଡ଼ା ନିଆଯାଏ । ମୁହେଁ ମୁହେଁ ହିସାବ । କ୍ଲିନର ତାହା କରେ । ସେ ମଧ୍ୟ କମ୍ ନୁହେଁ । ମୋଟା ପିକାଟାଏ ମୁହଁରେ ଲଗାଇ ଅର୍ଦ୍ଧଚନ୍ଦ୍ରାକାର ଟିପା ସିନ୍ଦୂରର ମଥାରେ ଲଗାଇ ପାସେଞ୍ଜରମାନଙ୍କୁ ଭାବପ୍ରବଣ କରାଇବା ପାଇଁ କଥାକଥାକେ କହେ, "ମା ଉଜଳାମୁଖୀଙ୍କର ଇଚ୍ଛା" "ମା'ଙ୍କର ଦୟା" । ତା'ଛଡ଼ା ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିବା ପାଇଁ ଗମ୍ଭୀର ହୁଏ । ଯେଉଁମାନେ ଦିନେ ଓଳିଏ ଏ ବସ୍‌ରେ ଯାଆନ୍ତି ଫଟେଇ ହୋଇ ପଚାରନ୍ତି, "ଅଇଁଠୁ, ଏ ବସ୍‌ର ବୟସ କେତେଦିନ ହେଲା ?" ଅଇଁଠୁ ତାଚ୍ଛଲ୍ୟ ହସ ହସି କହେ, "ତମର ଜନ୍ମ ପୂର୍ବରୁ ।" ଏବଂ ତା'ପରେ ଆରମ୍ଭ କରେ ଏକ ସତମିଛର ଇତିହାସ । ଏ ମୋଟର ବସ୍ ତା' ଜୀବନ କାଳରେ ଥରେ ଶହେ ମାଇଲ ଅତିକ୍ରମ କରି ଟାଟା ଯାଇଥିଲା, ଏହାହିଁ ଜୀବନରେ ତା'ର ସବୁଠାରୁ ବଡ଼ ଅଭିଯାନ । ଏକଥା କହିଲାବେଳେ ଅଇଁଠୁର ଛାତିଟା ଖୁବ୍ ଚଉଡ଼ା ହୋଇଗଲା ପରି ଜଣାଯାଏ । ସେ ଜୋର୍‌ରେ ପିକାଟାଣି କହେ, ସେ କି ବେଗରେ ସେମାନେ ଯାଉଥିଲେ– ବାପ୍‌ରେ ଗୋଟାଏ ଉଡ଼ାକଳ, ମାନେ ଉଡ଼ାଜାହାଜ ପଛରେ ପଡ଼ିଗଲା । ଏକଥା ମୋଟରଚାଳକ, ପ୍ରୋପ୍ରାଇଟର ଏବଂ ପୁରୋହିତ ଶ୍ରୀ ଅଭିରାମ ନଶୁଣିଲା ପରି ଶୁଣି ଗୋଟାଏ ଅସଂଲଗ୍ନ ଗୀତ ଗାଇବାକୁ ସୁର ଧରେ । ଯାତ୍ରୀମାନେ ବୁଝନ୍ତି ଏବେ ଗୋଟାଏ ଶୁଭ ମୁହୂର୍ତ୍ତ ଆସିଛି ମା ଉଜଳାମୁଖୀର ।

ମୁଁ ବି ଥରେ ଏହି ବସ୍‌ରେ ଚଢ଼ି ଗୋଟିଏ ପାହାଡ଼ ତଳର ଆଦିବାସୀ ଗାଁକୁ ଯାଇଥିଲି । ମୋର ବିଛଣା ଓ ସୁଟକେଶ ଛଡ଼ା ଛୋଟ ଥର୍ମୋଫ୍ଲାଶ୍‌ଟିଏ ଥିଲା । ସହରରୁ ପ୍ରାୟ କୋଡ଼ିଏ ମାଇଲ ସାଇକେଲରେ ଆସି ଭାବିଥିଲି ଏଥର ମା ଉଜଳାମୁଖୀ ମୋତେ ଠିକ୍ ଜାଗାରେ ପହୁଞ୍ଚାଇ ଦେବେ ।

ମୁଁ ଜିନିଷପତ୍ର ଧରି ବସ୍ ପାଖରେ ପହୁଞ୍ଚିଲାବେଳକୁ ବାବୁ ଅଭିରାମବାବା ଓ ଅଇଁଠୁଚନ୍ଦ୍ର ମୁଣ୍ଡରୁ ତଳିପାଯାଏ ଦେଖିଗଲେ । ଅର୍ଥଟା ବୁଝିପାରିଲି ନାହିଁ ପ୍ରକୃତରେ । ମୋତେ ବସ୍‌ରେ ଯିବା ମନା ହେଲା । ମୁଁ ଯେତେପାରି ସେତେ ଭଡ଼ା ଦେଇ ଯିବାକୁ ରାଜି ହୋଇଥିଲି । କିନ୍ତୁ ସାବ୍ୟସ୍ତ ହେଲା ମୁଁ ଆଣ୍ଠୁମାଡ଼ି ଉଜଳାମୁଖୀ ସାମ୍ନାରେ ରହିବି ।

ପୂଜା କରିବେ ଅଭିରାମବାବା ଓରଫ ଡ୍ରାଇଭର କମ୍ ପ୍ରୋପ୍ରାଇଟର । ସିନ୍ଦୂର ଲଗାଇବାକୁ ହେବ ମଥାରେ । ଭୋଗ ଦେବାକୁ ଅଣାର । ଅଇଁଠୁ ଭୋଗ ମଧ ବିକ୍ରି କରେ । ମୁଁ ମୋର ଘୋର ଅନିଚ୍ଛାସତ୍ତ୍ୱେ ରାଜି ହୋଇଗଲି ।

ତା'ପରେ ମୋତେ ତାରିଫ୍ କରି ଅଇଁଠୁ ଭଲ ଜାଗା କରିଦେଲା । ତା'ଛଡ଼ା ଅଭିରାମବାବା କହିଲା ମୋ ଭଳି ଯାତ୍ରୀ ସେ ଗାଡ଼ିରେ ପ୍ରଥମ । ମୋର ଗନ୍ତବ୍ୟ ସ୍ଥାନଟା ଥିଲା ଯିବାର ଶେଷ ସୀମାଠାରୁ ଆହୁରି ଦୁଇମାଇଲ୍ ଅଧିକ । ଅଇଁଠୁ କହିଲା, ପରବାୟ ନାହିଁ, ଆଜି ମା ଉଜଳାମୁଖୀ ଆଜି ସେଇ ଗାଁକୁ ବିଜେ କରିବେ ।

କଥାଗୁଡ଼ାକରେ ଟାଣଟା ଅଧିକ । ହିନ୍ଦୀ ଓ ଓଡ଼ିଆର ଅପୂର୍ବ ସମ୍ମିଶ୍ରଣ । ଅପଭ୍ରଂଶ ଓଡ଼ିଆ ଓ ହିନ୍ଦୀ ଶବ୍ଦ ବଙ୍ଗଳା ଢଙ୍ଗରେ ବେଶ୍ ଶ୍ରୁତିମଧୁର ।

ବସ୍ ଚାଲିଛି । ଗଦାଏ ମଣିଷ ଆଦିବାସୀ ଓ ହାଟୁଆ ମିଶାମିଶି । ଅଟକିଲା ଗାଡ଼ି । ଅବସ୍ଥାଟା ବେଶ୍ ଥମ୍‌ଥମ୍ ଜଣାଯାଉଛି । ସମସ୍ତେ ମୁଣ୍ଡ ତଳକୁ କରି ପ୍ରଣାମ ଜଣାଇଲେ । ମୁଁ ମଧ ବସ୍‌ରୁ ବାହାରିଲି । କଥାବାର୍ତ୍ତା ଚାଲିଲା, କୁକୁର, ବୋଦା ବଳି ପଡ଼ିଲେ, କିନ୍ତୁ ମୀମାଂସା ହେବା ପରି ଜଣାଗଲା ନାହିଁ । ଅଇଁଠୁ କହିଲା, ଏଇ ଯେଉଁ କଳା ମିଟିମିଟିଆ ଟୋକାଟା ଆଗରୁ ଜଣକୁ ସିନ୍ଦୂର ଘଷିଥିଲା– ଅର୍ଥାତ୍ ବିବାହ କରିଥିଲା, ତା' ତରଫରୁ ପିଲାଦିଓଟି । ଏବେ ଆଉଥରେ ଆଉ ଜଣକୁ ସିନ୍ଦୂର ଘଷି ଘରକୁ ଆଣିଥିଲା, ସେଇ ପିଲାକୁ ବଡ଼ଭାଇ ଟାଟାର ସୁଲାଇପାଟ ଖାଦାନକୁ ନେଇ ପଳାଇବ ବୋଲି ଚାହୁଁଛି । କିନ୍ତୁ ସେଇ ପିଲାର ପ୍ରଥମ ସ୍ତ୍ରୀର ମା ସାଙ୍ଗରେ ପଡ଼ି ବଡ଼ଭାଇ ତରଫରୁ ପିଲାଟିଏ ହୋଇଛି । ମୀମାଂସା କରୁଛନ୍ତି ଅଭିରାମବାବା ।

ଚୁପ୍‌ଚାପ୍ ଗୋଟାଏ ବଡ଼ ଟାଙ୍ଗରା ଉପରେ ବସି ଅଇଁଠୁର କଥାଟା ଠିକ୍ ବୁଝିବାକୁ ଚେଷ୍ଟା କରୁଥିଲି ।

ଅଭିରାମବାବା କପାଳ କୁଞ୍ଚିତ କରି କଥାଟାକୁ ଯେପରି ଖୁବ୍ ବୁଝିବାକୁ ଚେଷ୍ଟା କରୁଛି । ଏହି ନୀଳ ଆକାଶ ତଳେ ଯେଉଁଠି ବାଧା ନାହିଁ, ବନ୍ଧନ ନାହିଁ, ମଣିଷ ଚଳୁଛି, ଆବେଷ୍ଟନୀ ନାହିଁ । ଖୋଲା ପବନ ପରି ଖୋଲା ହୃଦୟ– ଖୋଲା ଚିନ୍ତା– ଖୋଲା ଆକାଶ ।

ଜଣେ ପରିଦର୍ଶକ– ପରିବ୍ରାଜକ ମନରେ ଏଗୁଡ଼ାକ ଆଶ୍ଚର୍ଯ୍ୟର କଥା ସତ୍ୟ କିନ୍ତୁ ଏଗୁଡ଼ିକ ପ୍ରତି ବିରକ୍ତି ନାହିଁ, ଅନାସକ୍ତି ନାହିଁ । ସବୁକୁ ସାଥିରେ ଧରି ଚାଲିବାରେ ଆମର ଆନନ୍ଦ ।

ମିଳାମିଶା ହୋଇଗଲା । ମା ଉଜଳାମୁଖୀ ଚାଲିଲେ ସେହି କର୍କଶ ନିନାଦ– ସେହି ବଣପର୍ବତ ଗାତ୍ରରେ ସେହି ସ୍ୱଚ୍ଛ ଧ୍ୱନି । ପଚାରିଲି, ଅଭିରାମ ଭାଇ, କଣ ସାଲିସ ଦେଲ– ହସିଲା । କହିଲା, ଏଗୁଡ଼ାକ ଏ ଅଞ୍ଚଳରେ ସବୁଦିନର ଆଶା, ମୁଁ ସାଲିସ୍ ଦେଲି– ତମେ ସବୁ କଥା ମନଇଚ୍ଛା କର, ଉଜଳାମୁଖୀକୁ ସାକ୍ଷୀ ରଖି କର ।

ସେମାନେ କଣ କଲେ ମୋତେ ଜଣାନାହିଁ । ବହୁଦିନ ପରେ ସେହି ଉଜଳାମୁଖୀ ବସ୍ ରାସ୍ତାରେ ସଭ୍ୟତାର ନାଲି ଗୋଡ଼ି ପଡ଼ିଯାଇଛି । ସରକାରୀ ଟ୍ରାନ୍ସପୋର୍ଟ ବସ୍ ଉନ୍ନତ ଗତିରେ ଆଗେଇ ଯାଉଛି ।

ତାଳତମାଳ ଶାଳ ପିଆଶାଳ ବଣ ଆଜି ଦୃଷ୍ଟିପଥରେ ପଡୁନାହିଁ । ରାସ୍ତାକଡ଼ରେ ଗୋଟିଏ ଗଛମୂଳେ ପଡ଼ି ରହିଛି ଉଜଳାମୁଖୀ । ମା ଉଜଳାମୁଖୀଙ୍କର ପ୍ରତାପ ଆଉ ନାହିଁ । ସେତେବେଳେ ଠାକୁରାଣୀ ମଣିଷରକ୍ତ ପିଉଥିଲେ, ମଣିଷ ଶାନ୍ତ ଥିଲେ । ଏବେ ଖୁନୀ ଡକାଏତି ବଢ଼ିଛି ।

ଆଜି ନିରୀହ ବଣର ମଣିଷ ହିଂସା-ଦ୍ୱେଷ ଭିତରେ ନିଜର ଆସୁରୀ ଆତ୍ମର ସନ୍ଧାନ ଟିକକ ମା ଉଜଳାମୁଖୀଠାରୁ କାଢ଼ି ଆଣି ନିଜ ନିଜ ଭିତରେ ହାତହତିଆରରେ ପରୀକ୍ଷା କରୁଛି ।

ମୋଟର ଷ୍ଟେସନରେ ଏବେ ଅଇଁଠୁ ହାତପାତି ମାଗୁଛି– ମା' ଉଜଳାମୁଖୀ ତମର ମଙ୍ଗଳ କରିବେ ବାପା, ପଇସାଟିଏ । ଅଭିରାମବାବା ଏବେବି ଗଛମୂଳେ ବସିଛି । ନୈରାଶ୍ୟ ନୁହେଁ ଏକ ଅସ୍ୱାଭାବିକ ପରିସ୍ଥିତି ବୋଧହୁଏ ତାକୁ ଗମ୍ଭୀର କରିଦେଇଛି । ବୟସ ଅଧିକ ବଢ଼ିଯାଇଛି ଯେମିତି । ବିଶ୍ୱାସ ହୁଏତ କମିଯାଇ ନଥିବ, କିନ୍ତୁ ଶ୍ରଦ୍ଧା କମିଯାଇଛି– ଏହା ଅଭିରାମ ନ କହିଲେ ବି ଅଇଁଠୁ କହିବ ।

•

# ବିନୋଦ୍ ଦାସ୍

'ଜନତା'ରୁ ମୋର ଜିନିଷପତ୍ର ତଳେ ରଖୁଛି କି ନାହିଁ, କଟକ ଷ୍ଟେସନରେ ପଛଆଡୁ ଅତି ବିନମ୍ର କଳାକାର ଠାଣିରେ ସେକ୍‌ହାଣ୍ଡ କଲା ବନ୍ଧୁ ବିନୋଦ ଦାସ– Congratulations– ମୁଁ ଚମକିପଡ଼ି ବିନୋଦକୁ କୁଣ୍ଢାଇ ପକାଇଥିଲି ।

–ତମର କ'ଣ ରେଡ଼ିଓ ଷ୍ଟେସନର ନାଟକ 'ମା' ? କ'ଣ ଆସିପାରି ନଥିଲ ? ଏକ୍ସଲେଣ୍ଟ୍– ସୁରେନବାବୁର ଡିରେକ୍‌ସନ କ୍ଳାସିକେଲ । ତମର ଏଇ 'ଏତେ ଦିନ ପରେ' ଚମତ୍କାର କ୍ଳାସିକ୍ । ସେଠି ମୋର ରୋଲ୍‌ଟା ସୁକାନ୍ତ ।

–ନା, ସେତିକି କାମ ଖାଲି ନୁହେଁ ।

–ବୁଝିଲି, ପେସାଦାର ନାଟ୍ୟମଞ୍ଚକୁ ତମର ସେଇ 'ପରାଗ' ନାଟକଟା ନ ନେଇ ଉତ୍କଳ କଳାନିକେତନକୁ ଯେଉଁ ନାଟକଟା ନେଇଛନ୍ତି... ମୋର କିନ୍ତୁ ଭୟ ହୁଏ, ଯୋଗୀନ୍ଦ୍ର ସେ କଳାକୁ ଫୁଟାଇ ପାରିବା ଭଳି ଅଭିଜ୍ଞତା ଥାଇପାରେ କିନ୍ତୁ ପ୍ରକାଶଭଙ୍ଗୀ ବା ଭାବର ସ୍ୱଚ୍ଛଳତାକୁ ବିଶ୍ୱାସ କରିପାରୁନାହିଁ ।

–ନା, ସେତିକି ମଧ୍ୟ ନୁହେଁ ।

–ଆରେ ହଁ କ'ଣ ଶୁଣିଥିଲି, ତମର ବହିଟା ପ୍ରକାଶ ପାଇଛି ଏଇ ଏପ୍ରିଲ୍‌ରେ ନା କ'ଣ ?

–କହିଲିପରା, ଆହୁରି ମଧ୍ୟ ଅଛି ?

–କ'ଣ ଚାକିରି କଲଣି ନା କ'ଣ, କି ଚାକିରି ?

–ଗୋଟାଏ ସେମିତି କିଛି କାଗଜ କଲମ ସାଙ୍ଗରେ ମୁହଁ ଘଷା ।

–ଅର୍ଥାତ୍ ବୁଝିଲି, ସରକାରଙ୍କର ଘରୋଇ ଅନ୍ତର୍ଗତ ଲୋକ ସମ୍ପର୍କରେ ।

–ହଁ ସେଇଆ ।

–ଦରମା ?

—ଏଇ ଦୁଇ... ଦୁଇଶହ ଭିତରେ ।

—ଦେଖିଲ, ଦେଖିଲ ସେଇ କମଳ କପୁର ମନେ ଅଛି, ଦିଲ୍ଲୀରେ । କ'ଣ ଅଛି ତା'ର । ସେ ତମ ସାଙ୍ଗରେ ନାଚି ଗାଇ କ'ଣ କରିପାରିବ କୁହ ? ସେ ପାଉଛି ସେଣ୍ଟ୍ରାଲରେ କେତେ ଜାଣ, ଆଶା କରିପାରିବ ନାହିଁ, ଛରିଶହ ଟଙ୍କା । ତମେ ତ ବି.ଏ. ପଢ଼ିଛ, ସେ ଇଣ୍ଟରମିଡ଼ିଏଟ । କଥାଟା ହେଲା ଘର ତା'ର ଲକ୍ଷ୍ନୌରେ ଆଉ ତମେ ଓଡ଼ିଶାର ଫେଲୋ । ଏବେ ତମେ କୁହ ମୁଁ ଆଜିଯାଏଁ ଏଇ କଥା କହି କହି ଆସୁଛି । କଳାର ମର୍ଯ୍ୟାଦା କଳା ଦେଇ ଶିଖିଲା ନାହିଁ । ଖାଲି ଯେଉଁ ସରକାର ଆସିଲେ ପାଟି କଲେ, ବ୍ୟକ୍ତିତ୍ୱ ନାହିଁ । ତାଙ୍କର ମନଇଚ୍ଛା ପ୍ରିୟ, ଅତି ପ୍ରିୟମାନଙ୍କୁ ବଡ଼ ଆସନକୁ ଚଢ଼ାଇ ଦେଲେ ହେଲା, ସେମାନେ ଭୋଟ ଜିତିଲେ ହେଲା । ସେକ୍ରେଟାରୀଙ୍କ ପାଖ ଲୋକ ବୋଲି ସିନା ଜିତନ୍ତି । ବ୍ରାହ୍ମଣ, କରଣ ବୋଲି କଳି ସୃଷ୍ଟିକରି ସେମାନେ ସିନା ବାହାବା ନିଅନ୍ତି । ପ୍ରମୋସନ ଦିଅନ୍ତି, ବ୍ୟକ୍ତିତ୍ୱ ଚିହ୍ନନ୍ତି କିଏ, କହିଲ ?

ଏଇଟା ବିନୋଦର ଗୋଟାଏ ଖୋଇ । ସେ ଗୋଟାଏ ଖୋଦ୍ କଳାକାର ବୋଲି କାହାକୁ ପରିଚୟ ଦେଇ ନାହିଁ କିମ୍ବା କଳାକୁ ଛାଡ଼ି ଅନ୍ୟର ଆଶ୍ରୟରେ ସେ ମୁଣ୍ଡ ଟେକିପାରିନି । ଘରର ସମସ୍ତ ଜଞ୍ଜାଳ ସେ ନେଇଛି । ତା' ଉପର ଭାଇଭଉଣୀର ଭାର ନେଇଛି । ସ୍ୱାଧୀନ ବେଉସା କରିଛି । ଖାଲି ସେତିକି ନୁହେଁ ଅର୍ଥ– ଉପାର୍ଜିତ ଅର୍ଥ ଯାହା ପାଇଛି ଘରକୁ ପଠାଇ ତାର ପେଣ୍ଟ୍ ଉପରେ ତାଳି ପକାଇ କଲେଜ ଛକ ଦୋକାନ ଉପରୁ ସିଙ୍ଗଲ କପ୍ ଚା ଖାଇ ସେ ଦିନ ଓ ରାତି ବିତାଇଛି । ରାଶି ରାଶି ନାଟକ ବହି ଧାର ଉଧାର କରି କିଣିଛି, ପଢ଼ିଛି । ଅଭାବ କିଛି ଅବଶ୍ୟ କେବେ ଅନୁଭବ କରି ନାହିଁ । ସେ ଭୋକରେ ରହି କଳାକାର ହେବାର ସୌଖୀନ କରିଛି ।

ମୁଁ କହିଲି– ଏବେ ଆଉ ଖବର କ'ଣ ?

ସେ ହସି କହିଲା– ଏମ୍.ଏସ୍‌ସି. ପରେ ଲ' ପରେ ଏଇ କଳା ପ୍ରତି ଲଭ୍‌ଟା ବେଶୀ ଗାଢ଼ ହୋଇଯାଇଛି ଯୋଗୀନ୍ଦ୍ର । ଆଉ ତମେ କାହାକୁ ଏ ଭିତରେ ନିଜର କଲଣି ପରା । ଆରେ ହଁ ସୁନନ୍ଦା ରେଡ଼ି– ଏ ଭିତରେ ମୋ ଭଉଣୀକୁ ଲେଖିଥିଲା କଣ ଜାଣିଚ, ତାକୁ ଦେଖିଚ ବୋଧହୁଏ– ତମର ।

ମୁଁ ହସିଲି... ତମେ ଖବର ନେଇଛ ତା'ହେଲେ, ବିବାହ ଏ ପର୍ଯ୍ୟନ୍ତ ହୋଇନାହିଁ... ହେବାର ମଧ୍ୟ ଆଶା ନାହିଁ । ବିନୋଦ କହିଲା... ମୁଁ ସମସ୍ତଙ୍କୁ ଲକ୍ଷ୍ୟ

କରିଯାଇଛି । ଅଙ୍କ କଷିଯାଇଛି ଏକ ହିସାବ ଖାତାରେ, ତମରି ପରି ସୃଜନଶୀଳ ବ୍ୟକ୍ତିମାନଙ୍କର ମୃତ୍ୟୁ କିପରି ହେଉଛି ।

ଏହାର ଏକ ହିସାବ ତମର ନବଗଠିତ ସରକାରଙ୍କୁ ଦେବାକୁ ଯାଉଛି । ସେଇଠି ଗୋଟାଏ ଲୋକ ଅଛି ଯେ' କି କଳାକାରର ହୁଏତ ଅଧ୍ୟବସାୟଟା ବୁଝିପାରିବ । ଯୋଜନା ଉପରେ ଯୋଜନା ଚାଲିଛି । ଯେଉଁମାନଙ୍କର ବ୍ୟୁତ୍ପତ୍ତି ଅଛି– ଯେଉଁମାନେ ଏଇ ଅଂଶର କୋଟି ପ୍ରାଣରେ ଝଙ୍କାର ତୋଳି ପାରିବେ ତାଙ୍କ ପାଇଁ କିଛି ନାହିଁ । ଯେ କଟକରେ ରହିଲା ସେ ସୁବିଧା ପାଇଲା । ଆଉ ତମ ପାଇଁ କ'ଣ, ଅଜଣା ମୃତ୍ୟୁ ! ମୁଁ କହିଲି– ବିନୋଦ, ତମର ଏ ଦରଦ କେବଳ ଏଇ ବଡିଖୁଣ୍ଟ ଆଳୁଅକୁ ଚାହିଁବା, ଛୋଟ ପୋକ ପରି ! କଳାକାର ତାର ନୀରବ ସାଧନା କରି ଆପଣା ମନରେ ଗାଇ ତାର ଜୀବନ ବିତାଇବ । ସେଇ ସିନା କଳାକାର ଏଇ କୃପଣ ପୃଥିବୀରେ ଏଇ ଟିକକ ସ୍ନେହ ପାଇଁ ଦାବି କରି ବସିବ କେଉଁ ଅଭିମାନରେ ? କେଉଁଥିପାଇଁ ? ଯେତେବେଳେ ତାନପୁରାରେ– ତମର କଳାର ଅଭିମାନ– ଅଭିମାନର ସୁର ଜାଗି ଉଠିବ ତମର ସମସ୍ତ କଳା– ସମସ୍ତ ସୃଷ୍ଟି ମରିଯିବ, ବିନୋଦ ।

ବିନୋଦ ଯୁକ୍ତି କରିଥିଲା– ତମେ ଏଇପରି ଛଳନା କରିବ ଜାଣେ । ଏଇଟା କଣ ତମର କଥା– ? ତମର ପେଟର କଥା– ? ମନର କଥା ? ବଞ୍ଚିଲେ ତ କଳା ବଞ୍ଚିବ । ମୁଁ କହିଲି– ହଁ ବିନୋଦ, ମୋର ତ ସେଇଆ ଆଦର୍ଶ । କଳା ଉପରେ ସ୍ନେହ-ମରମ ହୃଦୟ କଳାକାର ଜାଣେ । ସେ ସେଇ ବଇଁଶୀର ସୁରରେ ନିଜର ପ୍ରାଣର ପ୍ରାଣକୁ ମିଶାଇ ନେବ ନିର୍ବାଣ । ସେଇ ତ ପ୍ରାଣର ବଂଶୀ, ମୋହନ ବଂଶୀ । ଯେ ତାର ସନ୍ଧାନ ପାଇଛି, ତା'ରି ପାଇଁ ଝୁରି ଝୁରି ମରିଯିବ । ବିନୋଦ ପ୍ରକୃତିସ୍ଥ ହୋଇ କହିଲା– କିନ୍ତୁ ମଣିଷର ବଞ୍ଚିବାର ସୌଭାଗ୍ୟ, କଳାକାରର ବଞ୍ଚିବାର ଭାଗ୍ୟ କ'ଣ ? ମୁଁ କହିଲି– ବିନୋଦ, କଳା, ସାହିତ୍ୟ, ସଙ୍ଗୀତ– ଭଗବାନଙ୍କର ସ୍ପର୍ଶ ନେବାକୁ ଏଗୁଡ଼ିକର ସୃଷ୍ଟି । ଏହି ଭିତରେ ତମର ପାଇବା ମନୋରମ ସେଇ... ସେଇ ସୁରର ସୁର । ଡାକରେ ଗୁଞ୍ଜନ ଡାକ ।

ଷ୍ଟେସନ ଉପରେ ମୁଁ ଓ ବିନୋଦ ନିଶ୍ଚଳ । କୁଲି ବହୁ ସମୟ ଅପେକ୍ଷା କରି ଆମକୁ ଛାଡ଼ି ଚାଲିଯାଇଛି ।

ବିନୋଦ କହିଲା– ପଇସା ଅଛି ? ସିଗାରେଟ ଦରକାର । ବିଡ଼ି ହେଲେ ଚଳିବ । ବିନୋଦ ଟିକିଏ ଧୂମପାନ କରି ଆଶ୍ୱସ୍ତ ହେଲା । ଦୁହେଁ ବସିଲୁ ପ୍ଲାଟଫର୍ମ ଉପରେ– ତୈଳ ବିହୀନ କର୍କଶ ନିନାଦିତ ରେଳଚକ ଗ୍ଭଲିଛି ଦୂରକୁ ଆଉ ଦୂରକୁ । ବିନୋଦ କହିଲା– ତେବେ ମୋତେ କଣ କରିବାକୁ ହେବ କୁହ ତ ? କହିଲି– ବିନୋଦ, ମୋର ଉତ୍ତର ଦିଅ । କାହାକୁ ବଞ୍ଚାଇବା– କଳାକୁ ନା ତମକୁ ?

ସେ କହିଲା– କଳାକୁ ?

ମୁଁ କହିଲି– ତେବେ ଗ୍ଭକିରି କର ଓ କଳାର ସାଧନା କର, ମାତ୍ର ସାବଧାନ ବିନୋଦ, ଗ୍ଭକିରିରେ ପଶି ବଡ଼ ଅଫିସର ଆଶା କରି କଳାକୁ ବେଖାତିର କରିବ ନାହିଁ– ଯେଉଁଟା ସ୍ୱାଭାବିକ ।

ସେ ଓ ମୁଁ ଉଠି ଠିଆହେଲୁ...

ଆମେ ଏବେ ଦୁଇଜଣଠାରୁ ବିଦାୟ ନେଲୁ । ଦୁହେଁ ଦୁହିଁକୁ ଛାଡ଼ି ବହୁଦୂର ଗଲୁ । ମୁଁ ଆସିଲି ବଲାଙ୍ଗିର ଆଉ ସେ ଗଲା ସୁଦୂର ହାଇଦ୍ରାବାଦ ।

ପ୍ରାୟ ବର୍ଷଟିଏ ପରେ ସେ ସେଇଠୁ ବାହାହୋଇ ଆସିଲା । ମୁଁ ଚରିତା, ସରିତା, ମନୁଜା, ବନଜା, ତୁଳସୀ, କମଳା କି ସଲୀଳା କାହା କଥା କେବେ ମନରେ ବି ପକାଇ ପାରିନି ।

ସେଦିନ ଭୁବନେଶ୍ୱରରେ ଦେଖା ହୋଇଥିଲା ଏକ ବନ୍ଧୁ ମିଳନରେ, ଯେଉଁଥିରେ ସେ ମନ୍ତବ୍ୟ ଦେଇଥିଲା ଯେ ଆମର ଦେଶରେ କଳା ନାହିଁ, ଆମ ଦେଶରେ କଳାକାର ନାହିଁ । କଳାକାର ପାଇଁ କୌଣସି ଉପଯୋଗ ହିଁ ଦେଶର କ୍ଷତିକାରକ ।

ସେହି ମିଳନ ଗୋଷ୍ଠୀରେ ମୁଁ ଜଣକ କଥା କେବଳ ଚିନ୍ତାର କରିଥିଲି । ସେ ହେଉଛି ବିନୋଦର ପ୍ରେମିକା ସୁନନ୍ଦା– ଯାହାର କଣ୍ଠର ଭାଷା ବିନୋଦ କରୁଛି । ଏହି କଳା ସମ୍ବନ୍ଧେ ତିକ୍ତ ଉଦ୍‌ଗିରଣ । ଘରକୁ ଫେରିଆସି ମୁଁ ସୁନନ୍ଦାର ଆଲେଖ୍ୟ ଉପରେ ଏକ ଗୋଲାପର ମାଳା ପିନ୍ଧାଇଥିଲି ପ୍ରଥମଥର ପାଇଁ ।



# ଜ୍ୱଳନ

ଥଣ୍ଡା ପାଗ । ଧଇଁ ଉଠୁଛି । ରାତିସାରା ଖୁଁ ଖୁଁ– ଓଃ କି କଦର୍ଯ୍ୟ ଏଇ ଶ୍ୱାସରୋଗଟା ! କ'ଣ କମିବ ନାହିଁ ? ଏଇଟା ରାତ୍ରି, ପ୍ରହର ପ୍ରହର ଆଗେଇ ଚାଲିଛି । ଧଇଁ ବଢ଼ିଚାଲିଛି– ଖୁଁ ଖୁଁ ଖୁଁ ଖୁଁ– ହେ ଭଗବାନ ମୁକ୍ତି ଦିଅ ହେ– ମୁକ୍ତି ଦିଅ ।

କାହାର ଚଟ୍‌ଚଟ୍ ଶବ୍ଦ । କବାଟ ବନ୍ଦ ହେଲା । କଣ ଭବନ୍ତି ଫେରିଲା ? କେତେ ବାଜୁଥିବ ? ରୋଗୀ ବୃଦ୍ଧ ବୈକୁଣ୍ଠ ସ୍ତ୍ରୀ ଉମାକୁ ଡାକିଲେ– ଶୁଣୁଛ, ଖୁଁ-ଖୁଁ– ଖୁଁ-ଖୁଁ । ଉମା ବିଲିବିଲେଇ ଶେଯରୁ ଉଠି କହିଲେ କଣ ଗରମ ପାଣି ଟିକିଏ... ବୈକୁଣ୍ଠବାବୁ ପଚାରିଲେ– କେତେ ବାଜୁଛି ?– କେ-ତେ ? ସବୁ ଦ୍ୱନ୍ଦ୍ୱକୁ ସମାଧାନ କରି ଶୁଣାଗଲା– ଏକ ଦୁଇ । ରାତି ଦୁଇଟା– ଆଉ ଯାହା ଉପରେ ସେ ପ୍ରଶ୍ନ କରିବାକୁ ଚାହିଁଥିଲେ ସେ ତାଙ୍କ ମୁଣ୍ଡ ପାଖରେ ତାପ ନେଉଛି ହାତରେ ଔଷଧ ଧରି– ଭବନ୍ତି ।

ସବୁଦିନ ମା ଉମାଙ୍କର ସେଇ ଏକା ପ୍ରଶ୍ନ– ଭବନ୍ତି, ଏତେ ରାତ୍ରିରେ ବାହାରେ ରହିବାଟା ଭଲ ନୁହେଁ ମା ! ସେଇ ଆଖିରେ ବୈକୁଣ୍ଠ ମଧ୍ୟ ଚାହାଁନ୍ତି ।

ଭବନ୍ତି ବହୁତ କଥା ଯେପରି କହିବାକୁ ଚାହେଁ । ସବୁତକ ରହିଯାଏ ଆଖି ଦୁଇଟିରେ, କେବଳ କହେ– ଆଜି ଯାହାଙ୍କ ଘରେ ଚାକିରି କରୁଛି ତାଙ୍କର ପିଲାମାନେ ସିନେମା ଯାଇଥିଲେ । ମୁଁ ତାଙ୍କୁ ନେଇ ଯାଇଥିଲି ।

ତା'ପରେ ନିଃଶବ୍ଦ । ଭବନ୍ତି ରନ୍ଧାଘରକୁ ଆସେ । ମା ଭାତ ବାଢ଼ି ରଖିଥାନ୍ତି, ଖାଏ କିଛି । ପେଟ ଭିତରକୁ କେତେକ ଯାଏ । ଚାହା– ଚାହାରେ ପେଟଟା ସିଝି ଯାଇଛି । ନିଜର ଦୁର୍ବଳ ଅଙ୍ଗଟାକୁ ସେ ଉଠାଇ ତାର ଶୟନ କକ୍ଷକୁ ଆଣେ । ନିଦ ଆସେନା ବହୁତ ସମୟ ପର୍ଯ୍ୟନ୍ତ । ସେ ଟଙ୍କାକିଆ କାଚର ଲ୍ୟାମ୍ପଟାକୁ ଜଳାଇ ପାଖରେ ବହୁଦିନ ତଳର ସେଇ ଚିଠି ପେଣ୍ଡାଟି କାଢ଼ି ବସେ । ଥରକୁ ଥର ଚିଠି ପଢ଼ି ବସେ । ମନଟା ଆହୁରି ଆହୁରି ଭାବ ବ୍ୟାକୁଳ ହୋଇ ଉଠେ । ଶତଦ୍ରୁର ବନ୍ୟା ପରି ଆହୁରି ବେଗରେ ଛୁଟେ ।

ସେ ଚିଠିର ସମସ୍ତ ସମ୍ବୋଧନକୁ ଯୋଡ଼ି ଧରେ– ପ୍ରାଣର– ସ୍ନେହର– ଆଦରର ସ୍ୱପ୍ନା-ରାଣୀ– ଆହୁରି କେତେ ?

ଏଗୁଡ଼ିକ ତାର ସମ୍ପତ୍ତି । ଏଇଗୁଡ଼ିକ ତାର ପାଥେୟ । ତିନିମାସ ଧରି ସମରର ଦେଖାସାକ୍ଷାତ ନାହିଁ । ଚିଠି ଖଣ୍ଡିଏ ବି ନାହିଁ । ସେ କେଉଁ ଅଶୁଭ ମୁହୂର୍ତ୍ତରେ ସେମାନେ ଏକ ହୋଇଥିଲେ ଏବଂ ବୟସର ବସନ୍ତକୁ ଏଡ଼ି ନପାରି କୋର୍ଟରେ ବିବାହ ରେଜିଷ୍ଟ୍ରେସନ କରିଥିଲେ । ହେଲେ ତାଙ୍କ ବିବାହରେ ସେମାନେ କାହାକୁ ନିମନ୍ତ୍ରଣ କରିନଥିଲେ । ସମରର ବାପ ଭାଇ ଜାଣିପାରି ତାର ବି.ଏ. ପରେ ଟଙ୍କା ଯୋଗାଇ ନଥିଲେ ଏବଂ ଘରେ ସେ ସମସ୍ତ ଆଦର ସୋହାଗ ହଜାଇ ଫୁଟ୍‌ପାଥିରେ ତାର ଅନ୍ନ ସଂସ୍ଥାନ ପାଇଁ ଘୂରି ବୁଲୁଥିଲା ।

ସମର ନୂଆ ରାଜଧାନୀରେ ଏକ ଶୁଭରାତ୍ରି ପାଇଥିଲା । ଯେଉଁଦିନ ତାର ହାତବନ୍ଧା ଘଡ଼ି ବିକି ସେ ଏଗାରଟି ଇଣ୍ଟରଭିଉ ପାଇଁ ଆସିଥିଲା । କିନ୍ତୁ ତାର ବି.ଏ. ପଢ଼ିବା ଯୋଗ୍ୟତା ଏବଂ ଭଲ ଖେଳାଳି ଓ ବକ୍ତା ହିସାବରେ ଯୋଗ୍ୟତାଠାରୁ ବନ୍ଧୁ ବାନ୍ଧିବା ଓ ଚିହ୍ନା ପରିଚୟର ଯୋଗ୍ୟତା ଏଠାରେ ବେଶୀ କାମ କରେ । ସେ ଆସି ଭବନ୍ତି କୋଳରେ କାନ୍ଦିଥିଲା । ଭବନ୍ତି ଜୋରଦେଇ କହିଥିଲା– ତମର ପରିଚୟ ନିଶ୍ଚୟ ଏ ଦେଶ ସ୍ୱୀକାର କରିବ । ଜାଣିରଖ । ବ୍ୟସ୍ତ ହୁଅନା ।

ତା'ପରେ ସମର ଏକ କମ୍ପୋଜିଟର ଜୀବନ ଆରମ୍ଭ କରିଥିଲା । ଟିଉସନ୍ କରିଥିଲା । ଦୁର୍ଭାଗାର ଛାଇରେ ସାଗର ମଧ୍ୟ ଶୁଖିଯାଏ ।

ଏକ ଥିଏଟର ଦଳରେ ମଧ୍ୟ ମିଶିଥିଲା ସେ । ସବୁଠାରେ କିନ୍ତୁ ସେ ଅହେତୁକ ପରି ପଡ଼ିରହିଲା । କାରଣଟା ହେଲା– ତାର ଅଗ୍ରଗତିଟା କିଛି ବେଶୀ । ଊଉଳଦର ବଢ଼ିଛି । ସୋରିଷ ତେଲଠାରୁ ଲୁଣ ଦର ଚଢୁଛି । ସରକାର ପାଞ୍ଚବର୍ଷର ଯୋଜନା କରୁଛନ୍ତି । କାଗଜ କଲମରେ ଲକ୍ଷ ଲକ୍ଷ କୂଅ ଆଉ ସମୁଦ୍ର ଜଳସେଚନ ଯୋଜନାରେ ଦେଶ ପୂରି ଉଠୁଛି । କିନ୍ତୁ ଏହି ଉନ୍ନୟନରେ ଖରାଦିନରେ କେତୋଟି କୂଅରେ ପାଣି ଥାଏ, ସେକଥା କେଉଁ ଯୋଜନା ବୁଝୁଛି ?

ଅର୍ଥର ଶ୍ରାଦ୍ଧ । ମଧ୍ୟବିତ୍ତ ପରିବାର ଆଜି ଧ୍ୱଂସମୁଖରେ । ମରୁଛି– ତାର ନିର୍ବାଣ ହେଉ ଏଇ ତ ଯୋଜନା– ପାଞ୍ଚବର୍ଷ ବଞ୍ଚିଲେ ତ ଯାଇ...

ବୈକୁଣ୍ଠ ଆଖିରେ ଲୁହ ଛୁଟୁଛି । ଏହି ଧପ୍‌ପାବାଜି କେତେଦିନ ଆଉ । ଯେଉଁ ଦଳ ଶାସନ କଳକୁ ଆସିଥିଲେ ତେଲ ଦର କଥା ତ ବୁଝିଲେ ନାହିଁ– ଟେକ୍‌ସ

ବଢୁଛି । କାଗଜ କଲମରେ ମାନଦଣ୍ଡ ବଢ଼ିଲା ବୋଲି ଚିତ୍କାର ହେଉଛି । କିନ୍ତୁ କାହିଁ ସେ ମାନଦଣ୍ଡ ! ! ମଣିଷ ମରୁଛି !– ମରିବ ! ମରିବା ପାଇଁ ପଥ ସୁଗମ ହେଉଛି ।

ବୈକୁଣ୍ଠ ତାଙ୍କର ସେଇ ଅତୀତ ଦିନର ଟଙ୍କାରେ କୋଡ଼ିଏ ସେର ଚାଉଳ କଥା ମନେ କରୁଛନ୍ତି । ଲୋକେ ବଢ଼ିଲେ– ଲୋକଙ୍କ ପାଇଁ ସବୁ ହେଲା– ଟିକସରୁ ଅଜସ୍ର ଟଙ୍କା ହେଲା । କାହିଁ ଲୋକେ ତ ବୁଝିପାରୁନାହିଁ । ଲୋକେ ତ ଜାଣିପାରୁନାହିଁ– ଅଫିସରୀ ଶାସନ କଳ ଚାଲିଛି ।

ଭବନ୍ତି ବେଳେବେଳେ ଭାବେ ବାପାଙ୍କର ଏହି ଦୃଷ୍ଟିଭଙ୍ଗୀଟା ବଡ଼ କ୍ଲୀବ । ପରକ୍ଷଣରେ ସେ ତାର ଅନୁଶୀଳନ କରେ । ବଡ଼ଭାଇ ବିମଳ ବେକାର ହୋଇ ବସିଲା । ଆଇ.ଏ. ଫେଲ୍ ହେଲା । ଚାକିରି କାହିଁ ? ଚାକିରି ମିଳିଲା ନାହିଁ । ମା-ବାପା ବିମଳ ଉପରେ ଜୋରରେ ଚିତ୍କାର କଲେ ଦିନେ ।

–ବିମଳ ତା' ଆରଦିନ ଅନ୍ତର୍ଦ୍ଧାନ । ସାତବର୍ଷ ବିତିଗଲାଣି । କିଛି ଠିକ୍ ନାହିଁ । ଥରେ ହୀରାକୁଦରୁ ପଚାଶଟି ଟଙ୍କା ପଠାଇଥିଲା । ବାସ୍ ସେତିକି ।

ଭବନ୍ତିର ବିବାହରେ ବୈକୁଣ୍ଠବାବୁ ଖୁସି ନଥିଲେ । ଭବନ୍ତି ବି.ଏସ୍‌ସି. ପାସ୍ କରିଛି ଆଉ ଯେଉଁ ଶସ୍ତା ପାଉଡ଼ର, ସ୍ନୋ, ତେଲ କମ୍ପାନୀର ଲେବରଟରୀରେ ପ୍ରଥମରେ ପାଇଲା ଶହେ କୋଡ଼ିଏ ଟଙ୍କାରେ ଚାକିରି । କିନ୍ତୁ ଚାକିରିଟା ବି.ଏସ୍‌ସି. ପାସ୍ ପାଇଁ ନୁହେଁ, ଭବନ୍ତି ଜାଣିଛି ସେଇଟା ତାର ରୂପ ପାଇଁ । ଯେଉଁଥିପାଇଁ ମ୍ୟାନେଜର ପ୍ରତାପବାବୁ ଗାଡ଼ିରେ ବସାଇ ବହୁତଥର ଯାଡ଼େ ସିଆଡ଼େ ତାକୁ ନିଏ ।

ସେଦିନ ଭୋରୁ ନିଦ ଭାଙ୍ଗିଗଲା । ଉଠି ଦେଖେ ଆଗରେ ସମର । ସେ ବିଶ୍ୱାସ କରିପାରିଲା ନାହିଁ । ସେ କହିଲା, ସମର ! ବସ । ତିନିମାସ ଧରି ତମର ପତ୍ତା ନାହିଁ । ଟିକିଏ ଖବର ଦେବାର ତ କଥା । କେବେ ଆସିଛ ? ଆସି ନଥିଲ କାହିଁକି ? ଜାଣିଛ ସମର, ମୋର ମା ହେବାକୁ ଭାରି ଇଚ୍ଛା ହେଉଛି । ତମେ ତ ଜାଣ ସମର...

ସମର ତା'ର ସମସ୍ତ ଅଙ୍ଗଟା ବିଛଣା ଉପରେ ପକାଇ କହିଲା– ଯା' ଭିତରେ ମୁଁ ତିନିମାସିଆ ଏକ ଚାକିରି ପାଇଥିଲି ଆଉ ସେଥିରୁ ଦୁଇଶହ ଦଶଟଙ୍କା ପାଇଥିଲି । ସେଥିରୁ ଖଣ୍ଡିଏ ଶାଢ଼ି, ଖଣ୍ଡିଏ ବ୍ଲାଉଜ ଆଉ ଦିଓଟି କାନପାଶା ତମ ପାଇଁ କିଣିଛି । ଏହାପରେ ଅନିର୍ଦ୍ଦିଷ୍ଟ ପାଇଁ ଫୁଟ୍‌ପାଥିରେ...

ଭବନ୍ତିର ଆଖି ଛଳଛଳ ହୋଇଗଲା । ସେ ଉଠିପଡ଼ି ସମର ପାଇଁ ଚା ଓ କିଛି ଜଳଖିଆ ପ୍ରସ୍ତୁତ କରିଦେଲା । ମା ଉମା ଆସି ଜାମାତାଙ୍କର କୁଶଳତା କାମନା କଲେ । ଜାମାତା କେବଳ ଭାଗ୍ୟକୁ ନିର୍ଦ୍ଦେଶ କରିବା ଛଡ଼ା କିଛି କହିନଥିଲେ । କାଶ ସେମିତି ଖୁଁ ଖୁଁ ହେଉଥିଲା– ଗଳା ଖୁଁ ଖୁଁ । ବୈକୁଣ୍ଠ ସମରର ଉପସ୍ଥିତିକୁ ସହ୍ୟ କରିପାରୁ ନଥିଲେ । କାରଣ ତାଙ୍କର ଭୟ ଥିଲା ସମର ଯଦି ଭବନ୍ତିକୁ ପାଖକୁ ଟାଣି ନେଇଯାଏ ।

ସମର ସେଇଟା ଅନୁଭବ କରିଥିଲା । ଭବନ୍ତି ମନେ ମନେ ଠିକ୍ କରିନେଲା ଆଜି ସମସ୍ତ ଦ୍ୱିପହରଟା ସେ ସମର ସାଙ୍ଗରେ କଥା କହିବ– ତାଙ୍କର ଭବିଷ୍ୟତର ସୁନେଲି ସ୍ୱପ୍ନ କଥା ।

ସମର ଏକ ପରିତୃପ୍ତିର ଭୋଜନ ଶେଷ କଲାପରେ ଭବନ୍ତି କହିଲା– ଦେଖ ସମର, ମୋତେ ତମେ ରାତିରେ ମ୍ୟାନେଜର୍ ସାଙ୍ଗରେ ବୁଲିଲେ ମନରେ କିଛି ଆସେନା । ତୁମେ କଣ ବୁଝନା ମୁଁ ଯେ ତମକୁ ସମସ୍ତ ରାତ୍ରି କେତେ ସ୍ୱପ୍ନରେ ଅପେକ୍ଷା କରିଥାଏ । ସମର ହସି ହସି କହିଲା– ଭବନ୍ତି, ପେଟଋଖଣ୍ଡ ପୂରିଲେ ସିନା ତମର ପ୍ରଶ୍ନ । ମଣିଷର ଏହି ଋଖଣ୍ଡକ ଯେ କେତେବଡ଼ ଉପଦ୍ରୁତ ଅଞ୍ଚଳ, କଳ୍ପନାତୀତ । ତମେ କହିଥିଲ ନା ଭବନ୍ତି ମୋର ଭବିଷ୍ୟତ ଅଛି– ମୋର ପରିଚିତି ଦିନେ ସ୍ୱୀକୃତି ପାଇବ, ମୁଁ ସେହି ଅପେକ୍ଷାରେ ରହିଛି ଭବନ୍ତି, ସାରା ଜୀବନ ଏହି ଫୁଟ୍‌ପାଥ୍ ଉପରେ । ମୁଁ ପରିଚୟ ଲୋଡ଼ି ମରିବି, ଏଥିରେ ସାର୍ଥକତା ଅଛି– ପରିପୂର୍ଣ୍ଣତା ଅଛି । ଖାଇବା ପରେ ସମର ଭବନ୍ତିର ସମସ୍ତ ବାରଣ ନମାନି ରାତ୍ରିକୁ ଆସିବାକୁ କହି ଚାଲିଗଲା ।

ଭବନ୍ତି ସମରର ଦେଇଥିବା ଶାଢ଼ି ଓ ବ୍ଲାଉଜ ପିନ୍ଧି ବାହାରିଲା । ସମର କଥା ମନେପଡୁଛି । ଏଇ କାହାଣୀ ପରି ତାର କଥା । ଓଜନ କଥା । ସେ କାହାକୁ ମାନି ନେବାକୁ ରାଜି ନୁହେଁ । ସେ କାହାର ଦୟାର ପାତ୍ର ହେବାକୁ ଚାହେଁନା । ଭବନ୍ତି ପୁଣି ମନେ କଲା– ବାଜେକଥା, ସବୁ ବାଜେକଥା । ସମରର ସେଇକଥା– ଏଥିରେ ସାର୍ଥକତା ଅଛି, ଏଠାରେ ସାର୍ଥକତା ଅଛି ।

ଭବନ୍ତି ଠିକ୍ କଲା ତା'ର ସାଥୀ ବୀଣା– ସୁମତୀ– ବିନ୍ଧ୍ୟା ଘରକୁ ବୁଲିଗଲେ ମନ୍ଦ ହୁଅନ୍ତା ନାହିଁ । ବାହାରି ପଡ଼ିଲା ସେ– ଏଇ ତ ପାଖରେ ସୁମତୀ ଘର । ସେ ଡାକଦେଲା– ସୁମତୀ ଅଛୁ ? ସୁମତୀର ସ୍ୱାମୀଟି ଖୁବ୍ ଭଲ ପିଲା– ଅସ୍ଥିକଙ୍କାଳସାର

ସୁମତୀ ଆସି ଠିଆ ହେଲା । ଭବନ୍ତି ଘର ଭିତରେ ପଶି ଚମକି ପଡ଼ିଲା । ଯେ କଣ ଦୁଇଟି ପିଲାଙ୍କୁ ଜ୍ୱର, ପଖାଳ ଖୋଉଚୁ ? ସୁମତୀ କହିଲା– ଟଙ୍କାରେ ପାଞ୍ଚପା ଚାଉଳ, ତେଲ ତିନିଟଙ୍କା । ଦରମା ତ ସେଇ ସତୁରି । କଣ ବଢ଼ୁଛି ଯେ...

ସୁମତୀ ଯାହା କହିଲା ତାହା ଭୀତିପ୍ରଦ । ତାର କାଣରେ ରକ୍ତ ପଡୁଛି । ଭବନ୍ତି ଟାଉନ୍ ବସ୍‌ରେ ଚଢ଼ି ଫେରି ଆସିଲା ଆହୁରି ଅନେକ ଦୂର । ଏଇଟା ବୀଣାର ଘର– ବୀଣା କେଉଁ ଏକ ମୋଟର କମ୍ପାନୀର ମାଲିକର ରକ୍ଷିତା ହୋଇଛି ବୋଲି ଶୁଣିଥିଲା । ବୀଣା କବାଟ ଖୋଲିଲା । ଏ ତ ବୀଣା ନୁହେଁ, ଦେହରେ କଣ ହୋଇଛି । ବୀଣା ସଂକ୍ଷେପରେ କହିଲା ହସି– ସିପ୍‌ଲେଟିକ୍ ପେଚ୍ । ବଞ୍ଚିବାର ମୋହ । ମାଂସର ଶରୀର ।

ବାଟରେ ଦେଖାହେଲା ବିନ୍ଧ୍ୟା । ଚମତ୍କାର ଡ୍ରେସ୍ ପିନ୍ଧିଛି । ସେ ହାତଠାରି ସ୍ୱାଗତ ଜଣାଇ କାର୍ ଚଳାଇ ଚାଲିଗଲା । ତେବେ ଭବନ୍ତିର ଅନୁମାନ ସତ୍ୟ– ବିନ୍ଧ୍ୟାର ବାପା କଣ୍ଟ୍ରାକ୍ଟର । ଆଉ ବିନ୍ଧ୍ୟା ଯୋଗାଡ଼ କରେ ତାର ବାପା ପାଇଁ ମୋଟା ଧରଣର କଣ୍ଟ୍ରାକ୍ଟ ।

ସନ୍ଧ୍ୟା ନଇଁ ଆସୁଛି । ମହାନଗରୀରେ ସନ୍ଧ୍ୟା । ଟାଉନ୍ ହଲ୍‌ରେ କିଏ ଜଣେ ବଡ଼ ନେତା ଭାଷଣ ଦେଉଛନ୍ତି– ଦେଶକୁ ସମୃଦ୍ଧ କରିବା ଆମର ଲକ୍ଷ୍ୟ । ଆମେ, ଆମର ଦଳ ଏ ଦେଶର ମାନଦଣ୍ଡ ବୃଦ୍ଧି କରିଛୁ । ଆଉ ଏ ଦେଶରେ ଅଭାବ କିଛି ନାହିଁ– କିଛି ନାହିଁ ।

ଭବନ୍ତି ଠିଆହେଲା– ସମରର ସେଇକଥା– ମୋତେ ଏକ ସର୍ବହରା ଦଳର ସମ୍ରାଟ କୁହ, ସ୍ୱୀକାର କରିବି । ମୁଁ ଚାହେଁ ଏକ ସୁସ୍ଥ ସମାଜ ତାହା ପ୍ରଗତିଶୀଳ ହେବ । ସମସ୍ତଙ୍କର ସାମ୍ୟ ସମାନତା ରହିବ । ଯେଉଁ ସମାଜ, ଯେଉଁ ଶାସନ ଏ ଦେଶରେ ପ୍ରାଣ, ଶାନ୍ତି, ସମାନତା ଆଣି ନପାରିବ ସେ ଦଳ ଆମର ଲୋଡ଼ା ନାହିଁ ।

କୁଆଁ କୁଆଁ କାନ୍ଦୁଛି । ଲାଇଟ୍ ଖମ୍ବତଳେ ଭିକାରୁଣୀର ପିଲା । ଦୁଧ ଟୋପାଏ ନାହିଁ ।

ଭବନ୍ତି ତା' ଆଗରେ ଠିଆହୋଇ ଶିଶୁଟିକୁ କୋଳକୁ ନେଲା ।



# ଗୁନ୍‌ମନି

ଘର ଆଗଟା ଚହଳ ପଡ଼ିଗଲା ଏଇ ଡିବି ଡିବି ବାଜାରେ । ଛୋଟ ପିଲାଏ ଅଣ୍ଟାରୁ ଖସିଯାଇଥିବା, ସୂତା ନଥିବା ପେଣ୍ଟକୁ ଥରକୁ ଥର ଓଟାରି ଭିଡ଼ି ଦୌଡ଼ିଛନ୍ତି । ମାଙ୍କଡ଼ ନାଟ ଏ ସାଇକୁ କେବେ ଆସିନାହିଁ, ଆଜି ଆସିଛି । ବୁଢ଼ା କ୍ଷେତ୍ରା ଦିନେ ଆଣ୍ଠୁଗଣ୍ଠି ବାତରେ ନପଡ଼େ କି ଏ ମାଙ୍କଡ଼ ବେଉସାରେ ନ ପଶେ । ଗତ ତେୟାଳିଶିରେ କିଏ କେତେ ଛତରରେ ପଶିଗଲେ, ମରିହଜି ଗଲେ, କ୍ଷେତ୍ରା କାହାର ପେଜ ନଳାକୁ ଜଗି ସନଟା ବଞ୍ଚିଗଲା ସିନା ତେବେ ଆଉ ସେ ଦିହ ଫେରିଲା ନାଇଁ କି ତାର ତିରିଲା ଗେହ୍ଲୀର ମଧୁମୟ ଡାକ ଆଉ ତିନୋଟି ଦୁଗ୍ଧପୋଷ୍ୟଙ୍କର ସନ୍ଧାନ ପାଇଲା ନାହିଁ । ଗାଁ ଗୋହିରିରେ ଭିକଥାଳ ଧରି ବୁଲୁ ବୁଲୁ ସଂଜ୍ଞାହୀନ ଭାବରେ ସେ ଛୁଆ ଅବସ୍ଥାରେ ଗୁନ୍‌ମନିକୁ ପାଇଥିଲା । ଆଉ ସେହି ଗୁନ୍‌ମନି ତା'ର ଟଙ୍କା ପଇସା, ଧନରତ୍ନ, ପୃଥିବୀରେ ଯେତକ ମୂଲ୍ୟବାନ ପଦାର୍ଥ ଅଛି ସେଥିମଧ୍ୟରୁ ତା'ର ସ୍ଥାନ ସବୁଠାରୁ ଉଚ୍ଚରେ ।

—ଆରେ କି ଖାଇତେ ମନରେ— କି ଖାଇତେ ମନ୍ । ହାଟୁଁ ଆନି ଦେବି ଶୁଖୁଆ ବାଇଗନ୍— ଗୀତ ସାଙ୍ଗେ ସାଙ୍ଗେ ଦେ' ଦେ' ଡିଆଁ ମାରିଦେ', ଲଙ୍କା ପାର ହୋଇଯା' । ଦର ଅଭ୍ୟସ୍ତ ପରି ଗୁନ୍‌ମନି ଫୁଟେ ଉଚ୍ଚର ଗୋଟିଏ ବାଡ଼ିକୁ ପାର୍ ହୋଇଗଲା, ପେଟ ଦେଖାରେ ଦେଖା— ଗୁନ୍‌ମନି ପେଟ ଦେଖାଇ ପଡ଼ିଗଲା, ତା'ପରେ କନିଆଁ ବର ଘରକୁ ଗଲେ କେମିତି ବୋହୂ ହୋଇ ଯାଏ— ଭାର କିପରି ଦିଅନ୍ତି, ଗୋଟିକ ପରେ ଗୋଟିଏ ଖେଳ ଦେଖାଇଗଲେ ସେ ।

ଖେଳ ସରିଲା, ଖେଚଡ଼ା ସାଇ ଟୋକାଏଁ ଗୁନ୍‌ମନିକୁ ଖତେଇ ହେଲେ । ଗୁନ୍‌ମନି ଦାନ୍ତ ନିକୁଟି କ୍ଷେତ୍ରାବୁଢ଼ାର ପେଟତଳେ ବସିଲା । ମୁଠେ ଚଉଳ ମାଗିଲା । ଅଣ୍ଟାରେ ଘୁଂଘୁର ମାଳେ, ଦେହରେ ଫୁଲପକା ଜାମା, କାନରେ ଫାଶିଆ ପିନ୍ଧି କ୍ଷେତ୍ରାର କାନ୍ଧ ଉପରେ ଦୁଇଗୋଡ଼ ନଦି ଏବଂ ମୁଣ୍ଡ ଉପରେ ଦୁଇହାତ ରଖିଲା । କ୍ଷେତ୍ରାବୁଢ଼ା ବାଁ ହାତରେ ଝୁଲାଟାକୁ ସଜାଡ଼ି ଧରି ଠେଙ୍ଗାଟାକୁ ଡାହାଣ ହାତରେ ଧରି ଯାତ୍ରା ଆରମ୍ଭ କଲା ।

ସେଇ ଯେଉଁ ଘରଟା ଦି'ମହଲାର, ଘର ଆଗରେ ଗୋଲାପ ହେନା ଫୁଟିଛି । ବହୁ ସମୟରେ ବଗିଚାରେ ବାବୁମାନେ ବସି ଚାହା ଖାଆନ୍ତି, ଗପ କରନ୍ତି, ସବୁବେଳେ ଘରଟାରେ ରେଡ଼ିଓ ବାଜୁଛି, ରାତିରେ ନୀଳରଙ୍ଗର ପରଦା ସେପଟେ ଘରଟି ଆଲୋକରେ ଯେପରି ଇନ୍ଦ୍ର ଭୁବନ ପାଲଟିଯାଏ । ଉପରେ ବୋହୂ ଭୁଆସୁଣୀଟା ଅନେଇ ରହିଛି, ଗୁନ୍‌ମନିକୁ ଡାକୁଛି ।

ସେଇ ଘର ଆଗରେ ତା ଡିବି ଡିବି ନେଇ ବସିଲା କ୍ଷେତ୍ରାବୁଢ଼ା, ଗୁନ୍‌ମନି ନାଚି ଚାଲିଲା । ଆଉ ସେ କହିଚାଲିଲା ଗତାନୁଗତିକ ତାଳ ପକାଇ– ତାକ୍ ଧିନ୍ ଧିନ୍ । ଚିହିଙ୍କି ଆସିଲେ ବାବୁ– ବନ୍ଦ କର ! ବନ୍ଦ କର ! ଯେତେସବୁ ଖାଉଟିଆ ଦଳ, ମାଙ୍କଡ଼କୁ ନେଇ ବେଉସା । ଅନୁକୂଳଟା ବିଗିଡ଼ିଗଲା କି କ'ଣ ?– ବାହାରେ ପ୍ଲାଇମାଉଥ୍ ନୂଆ ଚକଚକିଆ ଗାଡ଼ି ଠିଆ ହୋଇଛି, ତାକ୍ ଧିନ୍ ଧିନ୍ ଶେଷ କରି ଗୁନ୍‌ମନିକୁ ଧରି ସେ ଫେରିପଡ଼ିଲା ସେଇ ରାସ୍ତାରେ ।

–ଏୟ୍ ବାବୁଆଣୀ ଡାକୁଛନ୍ତି, ଆ' ବାଡ଼ିଦ୍ୱାରକୁ ।

ଉପର ମହଲାରୁ ସେହି ଆକାଶୀ ରଙ୍ଗର ଶାଢ଼ିଟି ଓହ୍ଲାଇ ଆସିଲା ତଳକୁ । ଗୁନ୍‌ମନିର ନାଚ ଚାଲିଲା । ଭାରି ଆମୋଦ ପାଇଲେ ସୀମନ୍ତିନୀ । ଖେଳ ସରିଲା, ଚାଉଳ, ଡାଲି, ପରିବା ବେଶ୍ ପାଇଲା କ୍ଷେତ୍ରା । ମାଙ୍କଡ଼ ବେଉସାରେ ସେ ଏତିକି କେବେ ପାଇନି । ପାଇନି ଏତେ ଆଦର । ଗୁନ୍‌ମନି ପାଇଲା ପାଚିଲା କଦଳୀ । ପୁଣି କଥା ହେଲା ସବୁଦିନେ ଆସି ନାଚ ଦେଖାଇ ଯିବୁରେ ।

ବୁଢ଼ା ତା'ର ଶ୍ମଶ୍ରୁଳ ମୁହଁ ଉପରେ ଏକ ଅନ୍ତରଭରା ଆବେଗ ଦେଇ କହିଲା, ମା' ତୁମର ଉନ୍ନତି ହେଉ । ଧନଜନ-ଗୋପଲକ୍ଷ୍ମୀ ମାଡ଼ିଯାଉ । ବୋହୂଟି ମୁହଁରେ ହସର ରେଖା ଉକୁଟି ପଡ଼ିଲା, ଗୋରା ତକତକ ଗାଲ ଦୁଇଟିରେ ହସର ରକ୍ତିମ ଆଭା ପଡ଼ିଗଲା । ତା'ପରେ ଚାରିଅଣା ପଇସା ।

ବୁଢ଼ା ମନକୁ ମନ କୋଟି କୋଟି ଦେବଦେବୀଙ୍କୁ ପ୍ରଣାମ ଜଣାଇଲା । ଆଜି କି କୃପା, କି ଆନନ୍ଦ !

ବଜାରର ସେଇ ଭଙ୍ଗା ଛାତ ତଳରେ ତା'ର ଆଶ୍ରୟ । ଗଛଡାଳରେ ବନ୍ଧା ହାଣ୍ଡିଟିକୁ ଓହ୍ଲାଇ କଳରୁ ଦି'ହାଣ୍ଡି ପାଣି ଆଣି, ଭାତ ମୁଠେ ଫୁଟାଇ ଭାବିଲା, ଏତେବଡ଼ ଆଦର, ଏତେବଡ଼ ସ୍ନେହ ତ କେବେ କୋଉଠି ପାଇନି !

ଏହାପରେ ସେ ପ୍ରତିଦିନ ଯାଇଛି, ନୂଆ ନୂଆ ଖେଳ ଦେଖାଇଛି । ଗୁନ୍‌ମନି ପାଇଁ ନାଲି ନୀଳ କୁରୁତା ପାଇଛି । ଚଉଳ ଡାଲି ପାଇଛି । ବେଳେ ବେଳେ ଭାତ ଖାଇଛି । ଆଗରେ ସଲଜ୍ଜ ହାସ୍ୟ ସହିତ ସେହି ବଧୂଟି ଠିଆହୋଇଛି । ଏଥର ବୁଢ଼ାକୁ ଆଉ କେଉଁଠାକୁ ବୁଲିବାକୁ ବେଶୀ ପଡ଼େନି । ଦୁନିଆ ଗୋଟାକ ମୁଠାଏ ମୁଠାଏ ଗୁଣ୍ଡ କରି ଯେତେ ପାଏ, ସେ ଏକାଥରେ ଏଠାରେ ପାଏ, ପରବାୟ ନାହିଁ ।

ଗୋଟିଏ ଗୁରୁବାର ମଧ୍ୟାହ୍ନ । ବୁଢ଼ା ବାରିଦ୍ୱାରରେ ପାଟି କରୁଛି– ମା'– ମା'ଗୋ ! ପୂଝାରୀ ଆସିଲା, ତା'ର ଚଉଳ ଡାଲି ପ୍ରତ୍ୟହ ଥାଳିଟି ପାଇଲା । ବୁଢ଼ା ପଚାରିଲା, ମା' କାହିଁ ? ପୂଝାରୀ କହିଲା, ଦିହ ଖରାପ । ଲେଡ଼ି ଡାକ୍ତର, ପୁରୁଷ ଡାକ୍ତର, ଲୋକବାକ ସମସ୍ତେ ଗମ୍ଭୀର । କ'ଣ ବେଶୀ ଦେହ ଖରାପ, ବାବୁ ? ପଚାରିଲା ବୁଢ଼ା । ପୂଝାରୀ କହିଲା, ପିଲା ହେଇଛି । ଆନନ୍ଦରେ ବୁଢ଼ାର ପେଟ ପୂରି ଉଠିଲା । ଗୁନ୍‌ମନିକୁ ଛାତି ଭିତରେ କିଛି ସମୟ ପାଇଁ ଜାକି ଧରି ବସିଲା । ମନେ ମନେ କହି ଉଠିଲା, 'ବେଶ୍ ହେଲା, ଏଥର ସାନବାବୁ ଆଗରେ ମାଙ୍କଡ଼ ଦେଖାଇବ । ସେ ଭାରି ଖୁସି ହେବେ । ମା' କରିବେ ଆଦର । ପାଇବ ସେ ଲୁଗା, ବାବୁଙ୍କ ପୁରୁଣା ଜୋତା, ଦୁନିଆକୁ ପରବାୟ କ'ଣ ? ତାର କିଏ ନ ଦଉ, ଗୁନ୍‌ମନିକୁ ନେଇ ସେ ଠିଆହେବ । ଯାହା ଦେବେ ସେଇଥିରେ ସେ ଚଳିବ, ବାରଦ୍ୱାର ଶୁଣିପିଣ୍ଡା ହେବ କାଇଁକି ?

ସେଇ ଭଙ୍ଗାଦଦରା ଛାତତଳକୁ ଫେରିଲା ବୁଢ଼ା । ରାତିସାରା ନିଦ ହୋଇନି । କେଡ଼େ ସୁନ୍ଦର ପିଲାଟିଏ ହୋଇଥିବ । ମା' କେଡ଼େ ସୁନ୍ଦର । ପିଲାଟି ଆଉରି ସୁନ୍ଦର ହୋଇଥିବ । କାଲି ସକାଳେ ଯିବ, ବୁଝିଆସିବ ମା' କ'ଣ ଭଲ ଅଛନ୍ତି, ଟିକିପୁଅ ଭଲ ଅଛି । ରାତି ଶେଷ ଆଡ଼କୁ ତାକୁ ଜ୍ୱର ଆସିଲା । ସେଇ ପୁରୁଣା କମ୍ପଜର । ବୁଢ଼ା ଥରି ଉଠିଲା । ଗୁନ୍‌ମନି ମଥା ପାଖରେ ବସିଥାଏ ।

ଏମିତି ସାତଦିନ ବିତିଗଲା । ଦିନ ପରେ ଦିନ । ବୁଢ଼ାର ପାଣ୍ଠିସବୁ ଶେଷ । ପାଖ ଦୋକାନରୁ ଚାରି ପଇସାର ମୁଢ଼ି ଖାଇ ଶେଷ ସମ୍ୱଳ ଶେଷ କରି ଗୁନ୍‌ମନିକୁ ଧରି ବାହାରି ପଡ଼ିଲା ।

ନା– ସେଇ ଘରକୁ ଯିବ । ମା' କିମିତି ଅଛନ୍ତି ଖବର ନେବ, ଯାହା ଡାଲି ଚଉଳ ପାଇବ ସେ ଯଥେଷ୍ଟ । ମନରେ ତାର ଭାରି ଆନନ୍ଦ ।

ଆସି ଠିଆହେଲା ବାରିଦ୍ୱାର ପାଖରେ । ପୋଇଲୀଟାଏ କହିଯାଉଥାଏ– ତିନୋଟି ଛୁଆ ମଲାପରେ ଏ ଛୁଆଟି କେଡ଼େ ସୁନ୍ଦର ହୋଇଛି ଲୋ– ଦେବକୁମାର !

ବୁଢ଼ାକୁ ତ କେହି ପଚାରୁ ନାହାନ୍ତି । ଡାକଟା ନିର୍ଜୀବ । ଏତେ ଭେଦ କରି ଯିବ କିପରି ? ନା, ଯଦି ନାଚଟା ଆରମ୍ଭ ହୁଏ ତେବେ ସେ ନିଶ୍ଚୟ ଜାଣିବେ... ଆସିବେ ।

ଗୁନ୍‌ମନି ଲୋ କି ଖାଇତେ...

କାହାର କର୍କଶ ଗଳା ଝରକା ଦେଇ ଭାସିଆସିଲା– ନିଆଁଲଗା, ନିଆଁପାଉଁଶ ଆଣିଛି, ମୋ ପିଲା ଚମକି ପଡ଼ିଲା, ପଳା ଦୂର୍ ହ' ! ସବୁଜ ପରଦା ଖୋଲିଗଲା । ସେଇ ନାରୀର କଣ୍ଠ, ଯାହା କଣ୍ଠର ଆଦର ପାଇଁ ସେ ପ୍ରତିଦିନ ଚାଲିଆସିଛି ଏଇ ପଥରେ, ଅବିଚଳ ଚିତ୍ତରେ ।

–ଦୂର୍ ହ' ପଳା, ପଳା ! ଅସୁର, ମୋ ପିଲାକୁ...

ଦର୍‌ଦର୍ କରି ଲୁହ ଗଡ଼ି ଆସୁଛି ବୁଢ଼ା ଆଖିରୁ । ଗୁନ୍‌ମନି କାନ୍ଧରେ ଚଢ଼ି କୁଁ କୁଁ ହେଉଛି । ଫେରି ପଡ଼ିଲା ବୁଢ଼ା । ତାଙ୍କ ଦିଆ ଗୁନ୍‌ମନିର ରଙ୍ଗବେରଙ୍ଗର ପୋଷାକ ସେଇ ବାରିଦ୍ୱାର ପାଖରେ ରଖି ।

ସୁକୁମାର କୋଳକୁ ଆସିଛି । ବାବୁଙ୍କ ଛାତିରେ ପିତୃତ୍ୱର ବନ୍ୟା ଛୁଟିଛି । ଡାକିଲେ ବାବୁ– "ଏ ମାଙ୍କଡ଼ିଆ !"

ବୁଢ଼ା ଠିଆହେଲା ।

ବୁଢ଼ା ହାତରେ ସେ ଦେଲେ ଟଙ୍କାଟିଏ– ରୁପା ଟଙ୍କା !

'ଆସିବୁରେ ନେଇଯିବୁ ସବୁ'...

ତା'ର ସମସ୍ତ ଅଙ୍ଗ ନିଷ୍କ୍ରିୟ ହୋଇ ଉଠିଛି ଯେମିତି । କିଛି ଚିନ୍ତା କରିପାରୁନି । କିନ୍ତୁ ସେ ସହରରେ ଏହାପରେ ଆଉ କେବେ ତାକୁ କେହି ଦେଖିନି !



# ସମବର୍ତ୍ତନ

୧୯୪୫ ସାଲ ଭଦ୍ରବ ମାସ । ଖରା ଟାଇଁ ଟାଇଁ ପିଟୁଥାଏ । ତେବେ ଲୋକଗୁଡ଼ାକ ଊହିଁରହିଥାନ୍ତି ମଣ୍ଡପ ଆଡ଼କୁ । ମଣ୍ଡପରେ ଜଣେ ଖଦଡ଼ଧାରୀ ନେତା । ଦେଶହିତକର କାମମାନ କରି ଦେଶରେ ତାଙ୍କର ନାମ ଅଛି । ସୁଦକ୍ଷ ବକ୍ତା ଭାବରେ ତାଙ୍କର କୁସ୍ତିକସରତ୍ ଅଛି । ତା ସାଙ୍ଗକୁ ଗୌରବପୁ ଓ ଦୀର୍ଘ କଳେବର ବେଶ୍ ଖୋରାକ୍ ଯୋଗାଏ । ଆଣ୍ଠୁ ଲୁଚି ନାହିଁ ଧୋତି । କଥାରେ ଶାନ୍ତିର ପ୍ରେରଣା ।

ସାଧୁ ମଳିକ କହିଲା, ବୁଝିଲୁରେ ମଦନା, ଏ ସୁନା– ଖାଣ୍ଟି ସୁନାଟାଏ ପରା । ଆରେ ଘରେ କଣ ନାହିଁ, ଅଗାଧ ସମ୍ପତ୍ତି– ଦିଆ-ଥୁଆ କଲେ ଯୁଗ ଗୋଟାଏ ଲାଗିଯିବ ! ଦେଖୁଚୁ କିପରି ଲୋକଙ୍କ ସେବା ପାଇଁ– ଆମରି ଭଲ ହେବ ଏଇଥିଲାଗି ଗାନ୍ଧୀ ବୁଢ଼ା କଥାକୁ ଠିକେ ଠିକେ ଧରି କେତେ କଷ୍ଟ ସହୁନାହାନ୍ତି ? ଧନ୍ୟ କହିବା ଯାଙ୍କୁ !

ମଦନା କହିଲା, "ମଉସା, ମୁଁ କଣ ଶୁଣିଥିଲି ଜେଲପରା ବହୁତ ଥର ଯାଇଚେନି ।"

ସାଧୁ କହିଲା, "ଆରେ ଏକଥା ଜାଣିନୁ ?–" ବକ୍ତା ବକ୍ତୃତାର ମଝିରେ ଟିକେ ଅଟକି ଗଲାପରେ ଏ ଦି'ଟା ମଳିମୁଣ୍ଡିଆ ତାଙ୍କର ସରଳ ବିଶ୍ୱାସରେ ରୂପାୟିତ କରିଛନ୍ତି ।

ବକ୍ତୃତା ଊଲିଲା– "ଭାଇମାନେ, ଆମେ ବହୁବର୍ଷ ପରେ ଏ ସ୍ୱାଧୀନତା ପାଇଛେ– ଏହା ପଛରେ ବିସ୍ତୃତ ଇତିହାସ ଅଛି ! ଏ ବର୍ଷ ଭାରତ ପ୍ରଜାରାଜ ପାଇବାକୁ ଯାଉଛି । ଆମରି ଭିତରୁ ଲୋକଯାଇ ଆମର ପ୍ରତିନିଧି ହୋଇ ଦେଶକୁ ଚଳାଇବେ । ଭାଇମାନେ, ମୁଁ ଠିଆ ହୋଇଛି ଆପଣଙ୍କ ପକ୍ଷରୁ– କଂଗ୍ରେସ ପକ୍ଷରୁ ମୋତେ ଭୋଟ ଦିଅନ୍ତୁ ।"

ଏହାପରେ କଂଗ୍ରେସ ରାଜତ୍ୱରେ କଣ କରିବେ ତାର ତାଲିକା ।

"ଦେଶରେ ଯେଉଁ ଖାଦ୍ୟାଭାବ ଲାଗିଛି ତାହା ସବୁଠାରୁ ବଡ଼ ବିଷୟ । ଲୁଣ-ତେଲର ବ୍ୟାପାର ହେଉଛି ସବୁଠାରୁ ବଡ଼ ଜିନିଷ । ମୋତେ ଭୋଟ ଦେଲେ ଆପଣଙ୍କର କୌଣସି ବିପତ୍ତି ପଡ଼ିବ ନାହିଁ । ଆପଣମାନେ ସୁଖରେ ରହିବେ ।

କଳାବଜାର କଥା ଆପଣମାନେ ଜାଣୁଥିବେ । ଆପଣ ଯେଉଁ ଲୁଗାକୁ ଆଗରୁ ୫ ଟଙ୍କାରେ କିଣୁଥିଲେ ଆଜି କିଣୁଛନ୍ତି ୧୦ ଟଙ୍କାରେ । କାହିଁକି ଜାଣନ୍ତି ? ଏ ଦେଶରେ ତଣ୍ଟିଚିପା ବହୁ କୋଟିପତି ବ୍ୟବସାୟୀ ଅଛନ୍ତି, ସେମାନେ ପ୍ରଜାଶକ୍ତିକୁ ଓ ଜାତୀୟ ଜୀବନକୁ ନଷ୍ଟ କରୁଅଛନ୍ତି । ମୋର ପ୍ରଥମ କର୍ତ୍ତବ୍ୟ ହେବ ସେମାନଙ୍କୁ ବିନାଶ କରିବା ଓ ମୂଳପୋଛ କରିବା ।

ଓଡ଼ିଶାରେ କିପରି ବଡ଼ ବଡ଼ ଯୋଜନାମାନ କାର୍ଯ୍ୟକାରୀ ହେଉଛି ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବା । ଏଗୁଡ଼ିକ ହେଲେ ଦେଶର ଉନ୍ନତି ହେବ ଏବଂ ଦେଶ ଇଣ୍ଡଷ୍ଟ୍ରିଏଲ ହେବ । ଆମ ଲୋକ ଯାଇ ବଡ଼ ବଡ଼ ଚାକିରି କରି ସେଠାରେ ବଡ଼ଲୋକ ହେବେ ।

ଆମରି ଏହି ଅଖଣ୍ଡତାକୁ ବଜାୟ ରଖିବାକୁ ହେବ । ଆମର ସେହି ପୁରୁଣା କଳିଙ୍ଗ ଉତ୍କଳକୁ ଫେରାଇ ଆଣିବାକୁ ହେବ । ଦେଶ ଦେଶରେ ଏହାର ବାର୍ତ୍ତା ବିଘୋଷିତ ହେବ ।

ଭାଇମାନେ, ଆଜି ଆମେ ଧନୀଦ୍ୱାରା ପ୍ରପୀଡ଼ିତ ଓ ଲାଞ୍ଛିତ । ଗଡ଼ଜାତର ପ୍ରଜାଏ ଓ ଜମିଦାରର ପ୍ରଜାଏ ଅକଥନୀୟ ଯନ୍ତ୍ରଣା ଭୋଗ କରୁଅଛନ୍ତି । ପ୍ରଥମେ ଆମର ଉଦ୍ଦେଶ୍ୟ ହେବ ଗଡ଼ଜାତଗୁଡ଼ିକ ଭାଙ୍ଗିଦେବା ଓ ଜମିଦାରୀଗୁଡ଼ିକ ଉଠାଇଦେବା ।

ଆଜି ଜାତୀୟ ଜୀବନରେ ମହା ବିପ୍ଳବ ପହୁଞ୍ଚିଛି । ଜାତି ଜାତି ଭିତରେ ବିଦ୍ୱେଷ ଦେଖା ଦେଇଛି । ପାଣ, ହାଡ଼ି, କଣ୍ଡରା ପ୍ରଭୃତି ହରିଜନମାନଙ୍କୁ ବ୍ରାହ୍ମଣ, କରଣ ଆଜି ଛୁଉଁ ନାହାନ୍ତି । ଅଛୁଆଁ ବାଛନ୍ଦ କରି ରଖିଛନ୍ତି । ସେମାନଙ୍କୁ ପ୍ରଥମେ ଆମ ଭିତରକୁ ଟାଣି ଆଣିବାକୁ ହେବ; ପୂଜ୍ୟପାଦ ଗାନ୍ଧିଜୀଙ୍କର ମୂଳମନ୍ତ୍ର ଅହିଂସା ଧର୍ମର ପ୍ରଭାବ ଦ୍ୱାରା ।

ସାଧୁ ମଲିକ ମଦନକୁ କହିଲା, "ସତରେ ମଦନା, ଆମର ସେଇ ଗାନ୍ଧୀର ଭାରତ ଫେରି ଆସିବ– ସେଇଠି ସୁନା ଫଳିବ, ବାଘ-ଛେଳି ଏକା ଘାଟରେ ପାଣି ପିଇବେ, ସେଇ ରାମରାଜ୍ୟ । ଆଉ ମାଟି ତେଲ ଟିକେ ପାଇଁ, ଲୁଣ ଟିକେ ପାଇଁ,

ଲୁଗା ଖଣ୍ଡେ ପାଇଁ ହଇରାଣ ହେବାନି । ଜମିଦାରୀ ଉଠିଯିବ, ଭଲ କଥା, ନୁହଁରେ ମଦନା ? ସେଦିନ ମୋ ପିଠିଟା ଦେଖିଛୁ..."

ମଦନା କହିଲା, "କହନା ସେକଥା, ତୁ କଣ ବା କଲୁ ? ଜମିଦାରଙ୍କ ଷଣ୍ଢଟା ପାଚିଲା କିଆରିଟା ଜୁର କରିଦେଉଥିଲା । ତୁ..."

ସାଧୁ ମଳିକ– "ବଡ଼ଲୋକକୁ ଉତ୍ତର ନାହିଁ, ସ୍ୱର୍ଗକୁ ନିଶୁଣି ନାଇଁ । ଯାହା ହେଉ ଲୋକଟା ଉପକାର କରିବ– ଘରେ ପହୁଞ୍ଚୁ ପହୁଞ୍ଚୁ ରାତି ଦଶ ହେବ ।"

ସାଧୁ ଡାକଦେଲା– "ନେଉଳୀମା, ନେଉଳୀମା !" ନେଉଳୀମା କବାଟ ଖୋଲିଲା– "କ'ଣ ଏତେବେଳେ ସଭା ଭାଙ୍ଗିଲା କି ? କି କି କଥା ହେଉଥିଲ..."

ସାଧୁର ଛାତି କୁଣ୍ଢେମୋଟ । ସେ ହାତ ଦି'ଟା ଧରିପକାଇ କହିଲା, "ବୁଝିଲୁ ଲୋ ନେଉଳୀମା, ଆମର ଆଉ ଦୁଃଖ ରହିବ ନାହିଁ– ଗାନ୍ଧୀରାଜ ହେବ ପରା, ଲୁଗା, ତେଲ, ଲୁଣ ଶସ୍ତାରେ ମିଳିବ । ତୋ ପାଇଁ ଶାଢ଼ିଖଣ୍ଡେ ଶୀଘ୍ର ଆଣିଦେବି ଏଥର, ଆବାଦ ନ ସରୁଣୁ..." ସ୍ତ୍ରୀର ମୁହଁରେ ଫିକାହସ ।

କାଳର ରଥଚକ୍ର ପରେ ବହୁତ ଜିନିଷ ଆତଯାତ ହୋଇଯାଇଛି, କହନ୍ତି ପରିକଳ୍ପନା ମାପଚୁପ ହୋଇଯାଉଛି । ଚକ ଥରେ ଘୂରି ଆସିବାକୁ ଆଉ ବେଳ ନାହିଁ– କାଲି ସକାଳେ ୧୯୫୦ ସାଲ ।

ସମୟର ତାରତମ୍ୟରେ ଯେଉଁ ଫୁଲ ଫୁଟିବାର କଳ୍ପନା କରିଥିଲା ସାଧୁ ମଳିକ, ସବୁ ସରିଛି ।

ସାଧୁ ମଳିକର ତେଲ-ଲୁଣର ସଂସାର ସବୁଦିନ ପରି ଆଜି ବି ଅଚଳ । ଆଜି ବି ସାଧୁ ମଳିକର, ତାର ସ୍ତ୍ରୀର, ନେଉଳୀର ମୁଣ୍ଡବାଳ ନୁଖୁରା ରହେ । କଣ୍ଟ୍ରୋଲ ହୋଇଛି– ସୁବିଧା ଦରରେ ମିଳିବ– ସବୁ ସୁବିଧା ହେବ । ତେବେ କ'ଣ ହେବ– ତେଲିଆ ମୁଣ୍ଡରେ ତେଲ ।

ସାଧୁ ମଳିକ ଲୁଗା ଦୋକାନକୁ ଯାଇଛି ତାର ଲୁଗା କୁପନ୍ ଧରି । ବର୍ଷରେ ତାର ପ୍ରାପ୍ୟ ଦୁଇଖଣ୍ଡି ଲୁଗା । ବଡ଼ବଡ଼ିଆଙ୍କ ପାଇଁ ମାର୍ମରାଇଜଡ଼ ସୁପରଫାଇନ୍ ତ ଅଭାବ ନାହିଁ । ପାତଳା ଲୁଗା ବେଶୀ ଆସୁଛି ଗାଁ-ଗହଳକୁ । କାରଣ, ମଳିମୁଣ୍ଡିଆ

ସେମାନେ– ଦରକାର ଥିଲେ ବି ପସନ୍ଦ କରିବେନି । ଦରିଦ୍ର ସେମାନେ– ହାତରେ ପଇସା ନାହିଁ, ମୋଟା ରୋଟାରେ ଚଳିବା ମଣିଷ, ପଶୁପରି କାମ କରନ୍ତି ସେମାନେ, ମାଟିର ମଣିଷ । ମହାଜନର ପେଟ ବଢ଼ିଛି– ଶାସନ ହାତରେ ତାଙ୍କର ।

ସାଧୁ ମଳିକ ପରି ହଜାର ହଜାର ହତଭାଗା ନିରାଶ୍ରୟ, ସେମାନଙ୍କୁ କୌଣସି କାର୍ଯ୍ୟ ଦେଲେ ଦେଶର ବ୍ୟବସାୟ କଳା ବୃଦ୍ଧିପାଆନ୍ତା । ହୀରାକୁଦ ବନ୍ଧ– ବନ୍ଧ ତିଆରି ଚାଲିଛି । ହଜାର ହଜାର ସାଧୁ ମଳିକ ସେଠି କୁଲି– ଭାରବାହୀ ପଶୁ । ସେମାନଙ୍କର ପ୍ରଭୁ ହେଉଛନ୍ତି କେତେଗୁଡ଼ିଏ ବିଦେଶୀ– ପଞ୍ଜାବୀ । ସାଧୁ ମଳିକ ମାଡ଼ ଖାଏ, ତାରି ଦେଶରେ– ତାରି ଉପରେ ପଞ୍ଜାବୀର ବୁଟ୍ କଣ୍ଟା ନାକ କାନ ଫୁଟାଏ, ରକ୍ତ ବହେ ।

ବିଶାଳ ଉତ୍କଳ ପ୍ରତିଷ୍ଠା ଚାଲିଛି । ଜଗନ୍ନାଥ ମନୋଭାବ ଧରି ସରକାର ଆଗେଇ ଚାଲିଛି । ଷଢ଼େଇକଳା, ଖରସୁଆଁ ବିହାରରେ ମିଶିଛି । ବିଶାଳ ଉତ୍କଳର ପରିକଳ୍ପନା ଦେଶରେ ସୁନିୟନ୍ତ୍ରିତ ହୋଇଛି । ଶହ ଶହ ସାଧୁମଳିକ ମୁହଁରେ ଢୋତା ମାରି– ଅପମାନ ଦେଇ ମୋଡ଼ ତଳର ଭୂଇଁକୁ ଅଧେ ଖସେଇ ନେଉଛି । ଏ ଦେଶରେ ଏମିତି ହୋଇଛି– ସାଧୁ ମଳିକର କବାଟଗୁ ପୋଡ଼ିଯାଇଛି ଅଧେ ।

ସାଧୁ ମଳିକ ଆଜି ସ୍ତ୍ରୀର ନାକଗୁଣା ବିକି ଜମିଦାରକୁ ଭେଟି ଦେଇଛି– ଭକ୍ତିରେ ନୁହେଁ– ଭୟରେ । ଡର ଛାଡ଼ିନି । ଜମିଦାର ପିଆଦା ଆଜି ବି ଆସେ, ତାର ନିଶ ଦି ହଳକ ଆଜି ବି ଫୁଲିଉଠେ । ନେଉଳୀମା କୋଡ଼ରେ ତାର ସରୁ ମୁହଁଟି ଲୁଚାଏ । ସାଧୁ ମଳିକ ଭାବେ– ରୂପା ବି ଯୋଗ ଦିଏ– କେତେଦିନେ ଏହାର ଅବସାନ ହେବ ? ଜମିଦାର ରାଜତ୍ୱରେ ପୁଣି ଜମିଦାରୀର ଲୋପ ! !

ସାଧୁ ମଳିକ, ଅଛୁଆଁ ସେ । ସେ ଆଜି ଛୁଆଁ । ଭଲକଥା । କେଡ଼େ ସୁଖବର । ସେ ସମସ୍ତଙ୍କ ସହିତ ମିଶିବ– ସମସ୍ତିଙ୍କ ସହିତ ଖାଇବ । ଏ ତ ଭାରି ଭଲ କଥା । ସେ ସମସ୍ତିଙ୍କ ସହ ବଡ଼ ଠାକୁରକୁ ଦର୍ଶନ କରିବ । ସେ ନିଜେ ଯାଇ ପୂଜା କରିବ । ସେ ନିଜେ ଦେଖିବ ଛୁଇଁବ ଖାଲି ଠାକୁରଙ୍କର ନୁହେଁ– ଏ ବାବୁମାନଙ୍କର । ସେଦିନ ବାବୁମାନେ ପୂଜା ବି ଘେନୁ ନଥିଲେ । ଆଜି ଛୋଟ ଜାତିଙ୍କର ଭାଗ୍ୟ ଖୋଲିଛି– ତାଙ୍କୁ ଛୁଇଁ ପୂଜା ଦେଇପାରିବେ । ସେଦିନର କଥା ମନେପଡ଼ିଲା । ସେହି ବେଦିକା ଉପରେ ସେହି କହିଥିଲେ ନା "ମହାତ୍ମା ଗାନ୍ଧୀଙ୍କର ଅହିଂସାକୁ ଧରି– ପ୍ରଚାର କରି

ଏହା ସମ୍ଭବ ହେବ" ତେବେ ବଡ଼ ଦେଉଳରେ ଆଜି ଅହିଂସା ଦେବତା ବିଜେ କରିଛି– ସେଠି ଗାନ୍ଧୀଙ୍କର ଅହିଂସା ନୀତିକୁ ପ୍ରଚାର କଲା ସେଦିନ ପୋଲିସ୍‌ର ବନ୍ଧୁକ । ସେହି ଅହିଂସା ଅଛି– ଖାଲି କଥାରେ । ଅହିଂସା କାର୍ଯ୍ୟରେ ନୂଆ ରୂପ ନେଇଛି ।

କାଲି ସକାଳେ ୧୯୫୦ । ସାଧୁ ମଳିକ କଣ ଭାବୁଛି ପିଣ୍ଡାରେ ବସି । ରୂପା ତାର ସ୍ତ୍ରୀ, କଳସିଟା ଧରି ପଶିଆସିଲା ଘରକୁ ।

ସାଧୁ ମଳିକ ମନରେ ଚକ୍ର ଘୂରିବୁଲେ ।

"ତା ରୂପା ପାଇଁ ତ କିଛୁ କରିପାରିନି– ରୂପାର ବାଳ ତ ସେମିତି ନୁଖୁରା ଅଛି–ଶାଢ଼ିଟି ଭଲକରି ସେ ତ ଆଣିପାରି ନାହିଁ– ତାର ନେଉଳୀ–"

ସେଠ୍ କାଞ୍ଜିଲାଲର ଟ୍ରକ୍‌ଟା ଚାଲିଗଲା ଧୂଳି ଉଡ଼େଇ, ଧାନ ପ୍ରକିଓର କରିବ । ସେଦିନ ସେ ନେତା କହିଥିଲେ– ଏଇ ବଡ଼ଲୋକଙ୍କ କଥା । ଏବେ ତାଙ୍କର ଧୂଳି ଉଡ଼ିଯାଉଛି ।

ପୃଥିବୀ ଘୂରି ଯାଇଛି । ଦୁନିଆ ପାଲଟି ଯାଇଛି । ରଙ୍ଗ ଫେରିଯାଇଛି । କିନ୍ତୁ ଅଚଳ ଅଟଳ ସ୍ଥାଣୁ ହୋଇପଡ଼ି ରହିଛି ସାଧୁ ମଳିକ– ସାଧୁ ମଳିକର ଜାତି ।



# ଅୟି ଈ

ଆଇ ଡ୍ରିଙ୍କ୍ ଇଓର ହେଲ୍‌ଥ ।

ଗୋଟାଏ-ଦୁଇଟା-ତିନିଟା ଆବାଜ ମିଳେଇଗଲା ନିଥରରେ ଆଉ ତା' ସାଙ୍ଗେ ସାଙ୍ଗେ ମିଳେଇଗଲା ପେଟ ଭିତରେ ବେଶୀ ନୁହଁ– ଗୋଟିଏ ଗୋଟିଏ ପେଗ୍ ଧଳାଘୋଡ଼ା ! !

ବନ୍ଧୁ ଖୋସ୍‌ଲା ଏ ବର୍ଷଣମୁଖର ସନ୍ଧ୍ୟାକୁ ଆହୁରି କମନୀୟ କରିବାକୁ ଯାଇ ଏବଂ ଡିମ୍‌ନାଲେକ୍‌ର ଏଇ ସୌନ୍ଦର୍ଯ୍ୟ ଭିତରେ ନିଜର ବିକାଶ ଚଳଚଞ୍ଚଳ କରିବାପାଇଁ ଗୀତ ଧରିବାକୁ ଇଚ୍ଛା କଲେ । ତାଙ୍କର ଗୀତ ଗାଇବାର ଯେତେଟା ଉତ୍ସାହ ଥିଲା– ଆଉ ଥିଲା ଧୈର୍ଯ୍ୟ । କିନ୍ତୁ ଆମ ଭିତରୁ କାହାରି ନଥିଲା ଟିକିଏ ବୋଲି ସ୍ପୃହା ।

ଆଉ ବନ୍ଧୁ ଘୋଷ ତାଙ୍କର ଅଭ୍ୟସ୍ତ ସିଗାରେଟ୍ ପରେ ସିଗାରେଟ୍ ଖାଇ ବିଦେଶୀ ଜିନିଷ ପୋଡ଼ିବାକୁ ଚେଷ୍ଟା କଲେ । ମୁହଁ ଉପରେ ଜଳିଲେ ସାନ୍ତ୍ୱନା ଅଛି, କିନ୍ତୁ ପେଟ ଭିତରେ ନିଆଁ ତ ଆହୁରି ଉତ୍କଟ !

ମୋର ପ୍ରଥମ ଓ ଶେଷ ବନ୍ଧୁଟି ବିନୋଦ ଦାସ୍ । ଏକ କାଳରେ ନାମ ତାଙ୍କର ଦାସ ପାତ୍ର ଥିଲା । ପ୍ରଥମଟା ସେ ଡେସ୍ ପେଟ୍ରୋ ଲେଖୁଥିଲେ । କିନ୍ତୁ ଶ୍ରମ ବିଭାଗର କାର୍ଯ୍ୟକାରିତା ତଥା ଛୁଆପିଲାଙ୍କ ସମ୍ଭାଳିବାର ଭାର ବେଶୀ ଭାଗଟା ଘରଣୀ ଦେବାରୁ ଏଥର ଡେସ୍ ଲେଖୁଛନ୍ତି । ସାହେବ ହୋଇ ଅଗାଧୁଆ ରହିଲା ପରି ଦିନାକେତେ ଯୁବକାଳରେ ବାଳରେ ତେଲ ନ ଦେବା– ଇଂଲିଶ ରୀତିରେ ଚିନ୍ତା କରିବାକୁ ପ୍ରସ୍ତୁତ କରୁଥିଲେ । କି ଦାରୁଣ ବିହି ଏ ! କି ନିର୍ମମ ! ଠିକ୍ ସେହି ସମୟରେ ଉଣେଇଶ ସତଚାଳିଶ ପହୁଞ୍ଚିଲା । ଡେସ୍ ରହିଗଲେ– ବଟୁଆ ଧରା ଓଡ଼ିଆ । ପୁଣି ତା କକ୍ଷକୁ ଫେରିଆସି ଦେଢ଼ ହଜାର ଟଙ୍କାରେ ସ୍ୱକୀୟ ପରାକାଷ୍ଠାର ମର୍ଯ୍ୟାଦା ଦେଖାଇ ଶ୍ରୀମତୀ ଆଦରମଣୀଙ୍କୁ ଗୋଟିଏ ନିପଟ ଏଲ୍.ପି. ପାସ୍‌କୁ ଘରକୁ ନେଇ ଆସିଲେ । ପ୍ରଥମଟା ଡେସ୍ "ଲିଲି" ବୋଲି ନାମ ଦେଲେ । ସହରେ ବଜାରେ କନ୍ଦରେ କନ୍ଦରେ ଦୁଇବେଣୀରେ ଗୋଲାପ ବାନ୍ଧି ପଞ୍ଜାବୀ ଝୁଅର ମସୃଣ ସେଲ୍‌ଓ୍ୱାର ଭିତରେ ନିଜର

ବିନ୍ୟାସ କରି ସୁନ୍ଦରୀ ବୋଲି ବିବେଚିତ ହେଲେ । କିନ୍ତୁ ହାୟ ବିଶ୍ୱସୁନ୍ଦରୀ ପ୍ରତିଯୋଗିତା ବେଳକୁ ଗୋଟିଏ ଜନ୍ମହୋଇ ଆଉ ଗୋଟିଏ କୁକ୍ଷୀରେ । ଯାମିନୀ ହେଲା ବ୍ୟର୍ଥ । ନିଜେ ମିସେସ୍ ଲିଲି ଡେସ୍ ସ୍ୱାମୀଙ୍କ ଉପରେ ଶହେ ସାତ ଟେମ୍ପରେଚର ଦେଖାଇ କହିଲେ– ମୋର ଆଦ୍ୟ ପ୍ରାଇଜ୍‌ଟା ହୋଇଥାନ୍ତା ପ୍ରତିଯୋଗିତାରେ । କିନ୍ତୁ ମିଷ୍ଟର ଡେସ୍ ବୁଝିପାରିଥିଲେ ସବୁ– ଦେଢ଼ହଜାର ଟଙ୍କା ଓରଫରେ ଯେଉଁ ପାତ୍ରୀଟି ଆଣିଥିଲେ– ତାଙ୍କର ସୌନ୍ଦର୍ଯ୍ୟଟା କେଉଁଠି ! କାରଣ ପ୍ରିୟାଙ୍କର ଚୁମ୍ବନକୁ ଉପେକ୍ଷା କରୁଥିଲେ– କାରଣ ବେଗରେ ବାହାରି ଆସିଥିବା ଉପର ଛାମୁଦାନ୍ତ ପରଶରେ ପୁରାଣର ବୁଢ଼ୀମା'ର ଐରାବତ ଦନ୍ତାଘାତ କଥା ମନେପଡ଼େ । ସ୍ୱତଃ ଘରଣୀଙ୍କର ଏହି ଛୁଆ ସମ୍ଭାଳିବା ଭାରଟା ନିଜେ ନେଇଥିଲେ । ଆଉ ପ୍ରେୟସୀ ଆୟା ସାଙ୍ଗରେ ମୁଖର ସୌନ୍ଦର୍ଯ୍ୟର ଅକୃତ୍ରିମ ଚେଷ୍ଟାରେ ସାର୍ଥକ ହୋଇ ଅକ୍ଷୁଣ୍ଣ ଯୌବନକୁ ସେଲୁଆର ଢାଙ୍କି ସିନେମା ବା ଅମୁକ ବାବୁଙ୍କ ଘରକୁ ଯାଉଥିଲାବେଳେ ଛୁଆମାନଙ୍କୁ ନେଇ ମିଷ୍ଟର ଡେସ୍ ଘରେ ବ୍ୟସ୍ତ ଥିଲେ । ଋର୍ମିଙ୍ଗ ଲିଲି ଘରକୁ ଆସି ସ୍ୱାମୀକୁ ଧନ୍ୟବାଦ ଦେଇ କହୁଥିଲେ ତୁମେ ଚମତ୍କାର କିନ୍ତୁ ! ମିଷ୍ଟର ଖୋସ୍‌ଲା ଭାରତୀୟ ଦୁଷ୍ଟ ଅଭିନେତ୍ରୀ ପରି ଗୋଟିଏ ଋହାଣି ଢାଳି କହିଲେ– ଆପଣ କେବେ ପ୍ରେମ କରିଛନ୍ତି ! !

ହଠାତ୍ ଖୋସ୍‌ଲାଙ୍କର ଏ ପ୍ରଶ୍ନ ! ଜୀବନଟା ମଦପାତ୍ର ଭିତରେ ଯାଇଚି । ଦିନେ ବିବାହ କରିଥିଲେ । ଆଉ ଦୁଇଟି ପିଲା ମଧ୍ୟ ବର୍ତ୍ତମାନ । ଆଭିଜାତ୍ୟ ଠାଣିରେ ତାଙ୍କର କଥାବାର୍ତ୍ତା ତେବେ ବଡ଼ ସରଳ । ଆଉ ଏକ ସଞ୍ଜରେ ତାଙ୍କ ଗତ ସ୍ତ୍ରୀ କଥା କହୁଥିଲେ । ସେ ଆଦର୍ଶବାଦୀ । ଅବଶ୍ୟ ରମ୍ ବିଅର୍‌ରେ ନୁହଁ ! ଆଜକୁ ତିନିବର୍ଷ ତଳେ ଏଇ ଯଂତ୍ରପୁରକୁ ଆସନ୍ତି– ବିଗ୍ କେମିଷ୍ଟ ହୋଇ । ନାଁ ପଛରେ ବିଲାତ ଫେରନ୍ତା ଦୁଇହାତ ଡିଗ୍ରି । ବିବାହ ହୋଇଯାଇଥିଲା । ସ୍ତ୍ରୀ ମଧ୍ୟ ସୁଶିକ୍ଷିତା । ପ୍ରେମ ବିବାହ କରିଛନ୍ତି । ହଠାତ୍ ମନୋମାଳିନ୍ୟ ହୁଏ । ସ୍ତ୍ରୀ କହନ୍ତି– ତମକୁ କେବଳ ଜଗିବସିବା ମୋର କାମ ନୁହଁ । ମୋର ବହୁତ ବନ୍ଧୁ ଅଛନ୍ତି । ଖୋସ୍‌ଲା ଦେଖିଛନ୍ତି ଶର୍ମା କୋଳରେ ଢଳିପଡ଼ିବାର– ଆଉ ମହାନ୍ତି କୋଳରେ ନାଇଟ୍ କ୍ଲବ୍‌ରେ ଚନ୍ଦ୍ର ଦେଖିବାର । ପ୍ରଥମ ଯୁବକ ଅଭିନେତା ପରି ହିଂସ୍ର ହୋଇ ଉଠିଥିଲା ତାଙ୍କର ମନ । କିନ୍ତୁ ଆଉ ଆଜି ନାହିଁ । ଶ୍ରୀମତୀ ନୀରା ବାପଘରକୁ ଋଲିଯାଇଛନ୍ତି । ଏହାଛଡ଼ା ସେ ଆଉ ଫେରିବାର ମଧ୍ୟ ଆଶା ନାହିଁ । ଖୋସ୍‌ଲା ନାରୀ ବଦଳରେ ଧରିଛନ୍ତି ଅମୃତ । ସେ କ୍ଷଣକୁ କ୍ଷଣ ଦୁର୍ବଳ କରିପକାଏ । ଭୁଲିଯିବାକୁ ଆନନ୍ଦ ଦିଏ । ଖୋସ୍‌ଲା ଋହିଁଲେ–

–ନା ଆଜ୍ଞା ପ୍ରେମ କେବେ କରିନି– ଆଶା ମଧ୍ୟ ନାହିଁ ।

–ତଥାପି...

–ପ୍ରେମରେ ପଡ଼ିଲେ ସିନେମା ଥିଏଟରରେ ଦେଖିଛି ଟିକିଏ ବେକା ବୋକା ପରି ଦିଶେ । ତା'ଛଡ଼ା ମୋର କଠିନ ହୃଦୟ ବୋଲି ସମସ୍ତେ ଜାଣନ୍ତି କାରଣ ପ୍ରେମ ସୂତ୍ରରେ...

ମିଷ୍ଟର ଘୋଷ୍ ଚେଆର ଛାଡ଼ି ଠିଆହେଲେ, ଭୁଲ୍ କହୁଛନ୍ତି ମହାଶୟ ! ପ୍ରେମକୁ ଏ ରୂପ ନାମକରଣ କରିବା ଯଥାର୍ଥ ନୁହଁ । ପ୍ରେମ ହିଁ ଭଗବାନ । ପ୍ରେମ ହିଁ ତ ଆନନ୍ଦ । ସ୍ୱାମୀ-ସ୍ତ୍ରୀର ପବିତ୍ର ବନ୍ଧନ– ପବିତ୍ର ମିଳନ । ଆପଣ ପ୍ରେମ କରିନାହାନ୍ତି– ଜୀବନରେ କେହି ନାରୀକୁ ପାଇନାହାନ୍ତି ସେଥିପାଇଁ !

ମୁଁ କୃତାର୍ଥ ହେଲି । ମିଷ୍ଟର ଘୋଷ ସମ୍ପ୍ରତି ଗୋଟିଏ ବିଗତଯୌବନା ଉଚ୍ଚବଂଶୀୟ ବଙ୍ଗୀୟ ଲଳନାର ଗଳାରେ ଚଇସ୍ ଚଢ଼ାଇଛନ୍ତି । ସେ ଏଥିପାଇଁ ଗର୍ବାନ୍ୱିତ ।

ସ୍ତ୍ରୀ ସମ୍ପର୍କ ଅନୁଯାୟୀ କଥାକଥାକେ ଟାଲିଗଞ୍ଜ କଲିକତାର ଆଉ ନିଉ ଦିଲ୍ଲୀର ସେକ୍ରେଟେରିଏଟ୍‌କୁ ଧାଇଁଯାଆନ୍ତି ଆଉ ସମ୍ବନ୍ଧ କରନ୍ତି ଇଂଲଣ୍ଡର ଛାତ୍ରମାନଙ୍କ ସାଙ୍ଗରେ ଯେଉଁମାନେ କି ତାଙ୍କ ସ୍ତ୍ରୀ ସହିତ ଆଉ ଗୋଟିଏ ଗୋପନ ମିଳନ ରାତ୍ରିଯାପନ କରିବାକୁ ଭାରତ ଛାଡ଼ିବା ପୂର୍ବରୁ ଆଶା ରଖି ଯାଇଥିଲେ । ମିସେସ୍ ନୀଳିମା ବହୁ ଆଇ.ଏ.ଏସ୍. ଓ ଆଇ.ସି.ଏସ୍.ଙ୍କୁ ଅପେକ୍ଷା କରି ଯୌବନର ଶେଷ ଭାଗରେ ଯେତେବେଳେ ପହୁଞ୍ଚିଲେ ଅଗତ୍ୟା ମିଷ୍ଟର ତୁଷାରକାନ୍ତିଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ ହେଲେ । ମିଷ୍ଟର ତୁଷାର ଏବେବି ଜୋରଦେଇ କହିଛନ୍ତି ନାଇଟ୍ କ୍ଲବ୍‌ରେ ମୋର ସ୍ତ୍ରୀ ନୀଳିମା– ନିକ୍ ନେମ୍ ନିନିର କି ସୌନ୍ଦର୍ଯ୍ୟ ପ୍ରଶଂସା । ନୀଳିମାଙ୍କର ପୁରୁଷ ବନ୍ଧୁ ଅନେକ । ଦ୍ୱିପହରଟା ବେଶ୍ ସୁନ୍ଦର କଟିଯାଏ । ତାଙ୍କ ସାନଭାଇର ଗ୍ରାଜୁଏଟ୍ ଜୀବନର ବନ୍ଧୁ ମୁଁ ବୋଲି ନିମନ୍ତ୍ରିତ । ସେ କିନ୍ତୁ ଅବସୋସ କରନ୍ତି– ତମେ ବଡ଼ ନିର୍ଦ୍ଦୟ !

ବିନୋଦ କଥାଟା ଉପରେ ଜୋର ଦେଇ କହିଲା– ଓଡ଼ିଶାର କୃତବିଦ୍ୟ ଲେଖକ-କବି-ନାଟ୍ୟକାର । ତା'ଛଡ଼ା ସାମ୍ବାଦିକତା କରନ୍ତି । ଖୋସଲା ହସି ଉଠିଲେ କଥାଟା ଶୁଣି– ଆପଣ ଆପଣଙ୍କର ଦୁର୍ବଳତା ଲୁଚଉଛନ୍ତି !

ଘୋଷ ଟିପ୍ପଣୀ ଦେଲେ– ଆପଣଙ୍କ ପରି ସୁଦର୍ଶନ ଯୁବକ ପ୍ରଥମଟା ସେଇଆ କରେ । ତା'ପରେ ପୁଣି– ଛାଡ଼ନ୍ତୁ ମୋର ସ୍ତ୍ରୀର ମଉସାପୁଅ... ତିନିଜଣ ଯେପରି ସର୍ବବ୍ୟାପିମାନ ପୁରୁଷ । କଥା କଥାରେ ବିରାଟ ଧିତ ଅଧିତର କଥା ।

କହିଲି– ମହାଶୟ ମୋର ପ୍ରେମ କରିବାରେ ଦୁର୍ବଳତା ରହିଛି ଆଉ ତା'ଛଡ଼ା ରହିଛି ଦୂରଦୃଷ୍ଟି ଅଭାବ । ଆପଣମାନଙ୍କର ଅଛି ।

ଘୋଷ କହିଲେ– ଜୀବନରେ ହୁଏତ ମନଲାଖି ଝିଅ ପାଇନାହାନ୍ତି !

ବିନୋଦ କହିଲା– ହୁଏତ ମୋର ଭୁଲ ହେବ ନାହିଁ କହିବାରେ ଯେ ଏହାର ଯେତେ ସ୍ତ୍ରୀବନ୍ଧୁ ଅଛନ୍ତି ଏ ବିରାଟ ସହରରେ ସେତେଟା ଆଉ କାହାର ଅଛନ୍ତି ବୋଲି । କବି ସାଧାରଣତଃ ନାୟିକା ନ ହେଲେ...

କହିଲି– ସପ୍ତଦଶ ଶତାବ୍ଦୀର ରଜାପୁଅର ରୂପକଥା ସରିଯାଇଛି ବନ୍ଧୁ ! ପ୍ରେମଟା ଆପଣଙ୍କର ଯେପରି, ମୋର ମଧ୍ୟ ସେଇପରି । କିନ୍ତୁ ନାରୀର ପ୍ରେମଟା ମୋ ନିକଟରେ ଜଡ଼-ଅହେତୁକ, ଯାହାକୁ ଆପଣମାନେ କହନ୍ତି– ପ୍ରେରଣା ଇନ୍‌ସ୍ପିରେସନ୍ । ଆଦାମ ଯୁଗରେ ନାରୀର ପ୍ରରୋଚନାରେ ମଣିଷ ଖାଇଛି ବିଷ । ସେଇ ନାରୀ ପାଇଁ ସମ୍ରାଟ ଛାଡ଼ିଛନ୍ତି ସାମ୍ରାଜ୍ୟ । ସେଇ ନାରୀର ଅଧୀରତା ପାଇଁ ମହାପ୍ରଭୁ ଜଗନ୍ନାଥଙ୍କର ଖଣ୍ଡିତ ମୂର୍ତ୍ତି । ଆପଣଙ୍କ ସେହି ପ୍ରେରଣା– ଓମର ଖୈୟାମ୍‌ର ସେଇ ମଦପାତ୍ରର ସାଥୀ । ପ୍ରେମରେ ପଡ଼ି ପୁଅ ଘରଦ୍ୱାର ସମାଜରେ ବିଦ୍ରୋହ କରେ ଆଉ ଘର ଭାଙ୍ଗେ । ଆଉ ଝିଅ ଭାରି ସାବଧାନ, ସେ ଘର ବାନ୍ଧେ । ସୁବିଧା ପାଇ କେତେକ ସ୍ଥଳରେ– ନୟନର ଅଶ୍ରୁରେ ଲୁଟ କରିବାକୁ ଚହେଁ ପୁରୁଷର ପ୍ରେମ । ପୁରୁଷ ନିଜକୁ ନିଜେ ସାର୍ଥକ ! ନାରୀ-ମାୟାବୀ– ମିସ୍‌ଟ୍ରିୟାସ୍ । ସେ ମସ୍ତକରେ କଲ୍ୟାଣ ସିନ୍ଦୂର ନେଇ ସ୍ପାଇଲାଇଟ୍ ଦେଇ ପ୍ରେମ କରି ବସେ ।

ଆଉ ପୁରୁଷ– କହିପାରିବେ କି ? କେଉଁ ଦେଶରେ, କେଉଁ ରାଜ୍ୟରେ, କେଉଁ ପୃଥିବୀରେ ପୁରୁଷ ପରି କରି ଆସିଛି ନାରୀ ଦାନ ! ଇତିହାସରେ ସେ ସ୍ୱାକ୍ଷର ନାହିଁ । ପୁରୁଷ ଜୀବନକୁ ଯେ କେହି ଆସେ ନାରୀ– ମଥାରେ ସିନ୍ଦୂର ନିଏ– ଆଉ ପଦତଳେ ପ୍ରଣାମ ଜଣାଇ କହେ ମୁଁ ତୁମର ଯୁଗ ଯୁଗର ଦାସୀ । ଆଉ ନୁର୍ ଜାହାଙ୍ଗିର ପଦତଳେ ସମର୍ପଣ କଲା । ସେ ଆନନ୍ଦ ପାଇଲା ପୃଥିବୀର ଅତୀତ ବେଦନାକୁ ଭୁଲି ।

କିନ୍ତୁ ଇତିହାସ ସାକ୍ଷୀ ଦେଇପାରିବ କି କେଉଁ ପୁରୁଷ ଅତୀତର ବେଦନା ଭୁଲି ଘର ସଂସାର କରିପାରିଛି ସୁଖରେ...

ଖୋସ୍‌ଲା ଗମ୍ଭୀର ହେଲେ– ଠିକ୍ କହିଛ ବନ୍ଧୁ ! ତମରି ଏଇ ଚବିଶଟା ଶୀତ ବା ଗ୍ରୀଷ୍ମ ବା ବସନ୍ତ ଭିତରେ ତମେ ବହୁତ ଚିନ୍ତା କରିଚ । ତୁମେ ବହୁ ସତ୍ୟର ଆଧାର ଦେଇଛ ।

କାରଖାନାର ଦିନର ଶେଷ ପୁଙ୍ଗା ବାଜି ଯାଇଥିଲା । ଡିମିନାଲେକ୍‌ରୁ ଆମେ ଫେରିଲୁ । ଘୋଷ୍ ପାଖ ରେଷ୍ଟୁରେଣ୍ଟକୁ ଡାକିନେଲେ ।

ଘୋଷ ଆଉ ମୁଁ...

ଆଉ ରେଷ୍ଟୁରେଣ୍ଟ ପାଖ ପାଖ ସିଟ୍‌ରେ ପୁରୁଷ ସ୍ତ୍ରୀର ସମାବେଶ । ସମସ୍ତେ ପ୍ରେମିକା ନୁହନ୍ତି । ସିଲ୍‌କେନ୍ ସୁଟପିନ୍ଧା ଦାଢ଼ିବାଲା ପଞ୍ଜାବୀ, ମାଲିକ୍ । ଉପରେ ବୋର୍ଡ଼ିଂ– ସବୁ ବ୍ୟବସ୍ଥା ଅଛି । ପାଖଘରୁ ରୋଷ୍ଟ– ଶବ୍ଦ ଆସେ– ବାସ୍ନା ବି ! ରେଡ଼ିଓରେ ଦରଦୀ ବିରହୀର ବେହାଗ ସୁର । ଷ୍ଟେନିସ୍‌ଜଟର୍‌ର ଆମନ୍ତ୍ରଣ ।

–ତା'ପରେ କେତେଦିନ ଅଛନ୍ତି ?

–କିଛିଦିନ ଏଠାରେ ରହିବି– ଅନ୍ତତଃ ବର୍ଷଟିଏ ତ ।

–ତା'ପରେ ଆଉ ଗୋଟାଏ ଜାଗାକୁ ହୁଏତ ଡେପୁଟ୍ ହେବି !

ସେ ହସିଲେ– ଆପଣ ଭୁଲ କହିଛନ୍ତି । ପ୍ରେମଟା ଏତେବଡ଼ ଜିନିଷ ତାହା ଚିନ୍ତା କରିପାରିବେ ନାହିଁ । ମୁଁ ମୋ ସ୍ତ୍ରୀକୁ ଏତେ ଭଲପାଏଁ ଆପଣ ଜାଣନ୍ତିନି । ଆମ ଦୁହିଁଙ୍କର ଯେପରି ଏକ ଆତ୍ମା– ଏକ ପ୍ରାଣ ! ଜଣେ ଜଣକୁ ନ ପାଇଲେ ଭାବୁ ଯେପରି ଆମେ କେତେ ଦୂରରେ ଅଛୁଁ; କେହି କାହାକୁ ଭୁଲିପାରିବୁ ନାହିଁ । ସେ ମୋ ନିକଟରେ ସବୁବେଳେ ବସିଥାଏ । ସେ ମୋର ଅନୁଗତା– ମୁଁ ତାର ପତିଦେବ– ପରମଗୁରୁ ।

କାଳୀଦାସଙ୍କର ଜନାନ୍ତିକ କଥାଟା ମନରେ ପଡ଼େ । ଫେରିଗଲେ ମିଷ୍ଟର ଘୋଷ୍ । ତା' ଆରଦିନ ସକାଳ, ଆମେରିକାର ସାହେବମାନେ ଆସିଛନ୍ତି । ଏଠାରେ ପୁଞ୍ଜି ବଢ଼ାଇବେ । ଆସ୍ତେ ଆସ୍ତେ ଦେଶଟାକୁ ଜାଳିଦେବେ । ପୋଡ଼ିଦେବେ ।

ୱବାହରଙ୍କ ହେବ ଅପମୃତ୍ୟୁ । କଳାବଜାର ବଢ଼ିଲା– କର୍ମକୁଶଳତା କମିଲା । ଆଉ ଦେଶର ଷଡ୍ଯନ୍ତ୍ରକଳା, ଖରସୁଆଁ ସମସ୍ୟା । ବିହାର ପ୍ରାଣରେ ଯେପରି ବାଧୁଛି ତ୍ରିଶୂଳ ଆଘାତ । ପର ଦ୍ରବ୍ୟକୁ ଛଡ଼ାଇ ଅଣ୍ଟି ଭିତରକୁ ତାହା ଦେବାକୁ ଅମଙ୍ଗ ହୁଏ ମଣିଷର ମନ । ଗତକାଲି ସେହି ଉତ୍ତର ଦେଲେ ବିହାରର ମନ୍ତ୍ରୀ । ଓଡ଼ିଆ ମାଡ଼ ଖାଏ– ଓଡ଼ିଆ ସଂସ୍କୃତି ଉପରେ ଭିସୁଭିଅସ୍ ଜଳୁଛି । ତଥାପି ନେତାମାନଙ୍କର ସେହି ଧାରଣା ରହିଛି– ଡକ୍‌ଟରେଟ୍ ପାଇବେ– ସେମାନେ ବଢ଼ିବେ– ମରୁ କିନ୍ତୁ ଜାତି ! ସେମାନେ ହେବେ ମହାଭାରତୀୟ ପନ୍ଥାର ମନ୍ଥରା ଓ ଶିଖଣ୍ଡି– ତମର ଯୁଗ ଏ– ଜୟ ତ୍ରିରଙ୍ଗାର !

ମନେହେଲା ଯାଏଁ ଘୋଷଙ୍କ ଘରକୁ । ନେମ୍‌ପ୍ଲେଟ୍‌ରୁ ଜଣାଗଲା– 'ଇନ୍' । ସବୁଦିନ ପରି ଷେନିଏଲ୍ ଡଗ୍‌ଟା ନିମନ୍ତ୍ରଣ କଲା । ଘର ଦରଜାର ଗୋଟିଏ ଛୋଟ ଦ୍ୱାର ଆଗରୁ କେବେ ଆବିଷ୍କାର କରିନଥିଲି । ଗୋଟାଏ ଲୋକ ଛିଣ୍ଡା ଗେଞ୍ଜିଟାଏ ପିନ୍ଧି ବ୍ୟସ୍ତ ଅଛି । ଝାମ୍ପୁରା ବାଳ, ଛିଣ୍ଡା ପାଇଜାମା । କଲିଂବେଲ୍ ଦେବାକୁ ପଡ଼ିଲା ନାହିଁ, ଶ୍ରୀମତୀ 'ନୀଳି' ଅଭିନନ୍ଦନ ଜଣାଇଲେ– କାହିଁ ଆଉ କେବେ ଆସ ନାହିଁ । କଥା କ'ଣ ? ମୁଁ ଗୋଟାଏ ଅର୍ଥହୀନ ଉତ୍ତର ଦେଲି– ନୀଳିମା ଚମତ୍କାର କେଶ ବିନ୍ୟାସ କରିଛନ୍ତି ।

ଏଇ ଆଗରୁ ଫ୍ରେସ୍ ବାଥ୍‌ଟାଏ ହୋଇଛି । ଦେହରେ ଟେଲ୍‌କମ୍ ପାଉଡ଼ର ଗାଲରେ ମଖା– ତମକୁ ବଡ଼ ସ୍ମାର୍ଟ ହେବାକୁ ହେବ । ଯେସ୍ ତୁମେ ନାଇଟ୍ କ୍ଲବ୍‌କୁ ଯାସ । ତମେ ଚମତ୍କାର ବଇଁଶୀ-ଗୀତଗାଇ ଜାଣ ମୁଁ ଶୁଣିଛି । ମୁଁ ଏକଦମ କୃତାର୍ଥ ହେଲି । ସେ ମଝିରେ ଚିତ୍କାର କଲେ– ଓଗୋ ଆମାର୍ ସାୟା, ଶାଢ଼ି, ବ୍ଲାଉଜ୍‌ଟା ଦେଲୋ– ଆର୍ ଯେ ପାଞ୍ଚମିନିଟ୍ ସମୟ ! ପାର୍ଟି ଆଟେଣ୍ଡ କର୍‌ତେ ଯେତେ ହବେ ।

ଯେଉଁ ଶବ୍ଦଟା ଆସୁଥିଲା ସେଇ ଆଡ଼କୁ ଅନାଇଲି । ଇଲେକ୍‌ଟ୍ରିକ୍ ଇସ୍ତ୍ରିର ଶବ୍ଦ । ଆଉ ଶାଢ଼ି, ବ୍ଲାଉଜ୍, ସାୟା, ବଡ଼ିସ୍ ଉପରେ ଚଳଉଛନ୍ତି ଇସ୍ତ୍ରି କିଏ– ଗୁଡ୍ ହେଭେନ୍‌ସ–ଶ୍ରୀମାନ ପତିଦେବ– ପରମଗୁରୁ ତୁଷାରକାନ୍ତି ଘୋଷ୍ । ଫେରିଲି– ଏ ଜୀବନରେ ଦୀର୍ଘଇର ପ୍ରଶ୍ନ ଯେପରି ନ ଉଠୁ ! !



# ଦେବଦୂତ

'ଜୟହିନ୍ଦ୍'

ମୁଣ୍ଡ ଟେକି ଋହିଁଲି ଉଗ୍ରସେନ– ମୋର ମାଟ୍ରିକ ଜୀବନର ବନ୍ଧୁ । ନେତାର ବେଶ । ବେଶ୍ ଗୋଟାଏ ଖଦଡ଼ ଟୋପି । ଦେହରେ ଜବାହରଲାଲୀ ଜାକେଟ୍ । ବେହରଣ ମୋଟା ଖଦଡ଼ ଧୋତି । ସବୁ ଇସ୍ତ୍ରି । ଗୋଡ଼ରେ ଧଳା କାନ୍‌ଭାସ୍ ଜୋତା । ଉଗ୍ରସେନ ସହିତ ବହୁଦିନ ପରେ ଦେଖାସାକ୍ଷାତ । ପୁଣି ବେଶଟା ଯେ ନିହାତି ବଦଳି ଯାଇଛି । ଏଇଟା ବି ନିହାତି ଲକ୍ଷ୍ୟ କରିବାର ବସ୍ତୁ । ଉଗ୍ରସେନ 'ପ୍ରଜାତନ୍ତ୍ର' କପିଗୁଡ଼ାକୁ ଟେବୁଲ ଉପରେ ରଖିଦେଲା ।

ମୋ ତୁଣ୍ଡରେ ଆଉ 'ଜୟହିନ୍ଦ୍' ଧ୍ୱନି ଶୁଣିବାର ବୋଧହୁଏ ଅବସର ପାଇନି । ନଥି କରି ମୋ ପାଖ ଚେୟାର ଉପରେ ବସିପଡ଼ିଲା । କଥା ଆରମ୍ଭ ହେଲା । ମନେହେଉଥାଏ ପଋରନ୍ତି– 'କେମିତି ତୁ ଏ ଅବତାର ଗ୍ରହଣ କଲୁ' । ଡର ଲାଗିଲା । ହାତରେ ମନ୍ତ୍ରୀଙ୍କ ମୁଖପତ୍ର । 'ତୁମେ' ଡାକଟା ପ୍ରଥମେ ମୁଁ ବାହାର କଲି । ମାଟ୍ରିକ କେରିଆରରେ 'ତୁ' 'ଶଳା' କିନ୍ତୁ ବର୍ତ୍ତମାନ ସେ ଦେବଦୂତ । ଲଫଙ୍ଗା ଉଗ୍ରଚନ୍ଦ୍ର ସେ କଂସର ପିତା ଅର୍ଥାତ୍ ସାକ୍ଷାତ ଉଗ୍ରସେନ ଏପରି ବେଶ ଧରିବା ବାସ୍ତବିକ ଗୋଟାଏ ଲକ୍ଷ୍ୟ କରିବାର ବସ୍ତୁ । ମାଟ୍ରିକରେ ଥରେ ନୁହେଁ ଦିଥର ନୁହେଁ ଋରିଥର ଯେତେବେଳେ ୟୁନିଭରସିଟି ଇନ୍‌କୋର କଲା ଭାବିଲି ବୋଧହୁଏ ଅଧମତାରଣ ପନ୍ଥାଟିଏ ବେଶ୍ ଧରି ନେଇଛି । ଯାହାହେଉ କଥା ଆରମ୍ଭ କଲି, "ବହୁଦିନ ପରେ... ବର୍ତ୍ତମାନ ତୁମେ କେଉଁଠି ?" କଥାରେ ଜୋରଦେଇ କହିଲା– ଶୁଦ୍ଧଭାଷା– ଭାବିଲି ଲେକ୍‌ଚର ଦେଇ ଦେଇ ମୁଖସ୍ଥ ହୋଇଯାଇଥିବ ପରା– "କଣ କରାଯାଏ ଦେଖୁଛ ତ– ଦେଶର– ଦେଶମାତୃକାର କିଛି ଭଲକାମ କରିବା ପାଇଁ ତାହାରି ଆଶାରେ ବାହାରି ପଡ଼ିଲି ।" ଭାବିଲି ହଁ ପ୍ରଧାନମନ୍ତ୍ରୀଙ୍କ "ପ୍ରଜାତନ୍ତ୍ର" ସାର୍ଟିଫିକେଟ ଖଣ୍ଡିକ ହାସଲ କରି । ମନ ଭିତରେ ସିନା ଗୁରୁଗୁରୁ ହେଉଥାଏ ବାହାରକୁ ହସ ଫୁଟାଇ କହିଲି "ବାସ୍ତବିକ ତୁମର ଏ କାର୍ଯ୍ୟରେ ତୁମେ ସାଧୁ, ଆଦରର ପାତ୍ର । ସମାଜର ତଥା ଜାତିର ଏତାଦୃଶ କାର୍ଯ୍ୟ କରିବା ଅର୍ଥାତ୍ ତୁମର ଗୌରବ ନେଇ ଆମେ ଗୌରବାନ୍ୱିତ ହେବା ।" ଆରମ୍ଭ

କଲା– ବର୍ତ୍ତମାନ ପରା ଦେଶର ଯେଉଁ ପରିସ୍ଥିତି ସେଥିରେ ଭାରତର ନବ ଯୁବକ ବେଶୀ ଦାୟୀ– ଆମେ ତ ଆଉ ବିଲର ବିଲୁଆ ହୋଇ ରହିପାରିବା ନାହିଁ । ଆମର ଶକ୍ତି ଅଛି, ସାମର୍ଥ୍ୟ ଅଛି । ଚାକର ଡାକଦେଲା, "ଗାଧୋଇବେ ଆସନ୍ତୁ, ବାବୁଆଣୀ..." "ହଉ ଯା–" ବିଦାୟ ଦେଲି । ବୁଝିଲି, ଅନ୍ତଃପୁରରୁ ତାଗଦା ଆସିଛି । କଚେରି ଅଛି । କିରାନି ମୁଣ୍ଡ । ଟିକିଏ ଡେରି କରିଦେଲେ ସିଆଡ଼େ ସୁପରିନ୍‌ଟେଣ୍ଡେଣ୍ଟ ନାଲି ଆଖି ଦେଖାଇ ଯାହା କହିବ ତାହା ତୁଣ୍ଡରେ ଧରିହେବ ନାହିଁ, ତଲବ ବି ମାତ୍ରୁଛି ଅସମ୍ଭାଳ । କଣ କରାଯାଏ, ମନ୍ତ୍ରୀଙ୍କ ଦୂତ! କହନ୍ତି ପରା ମନ୍ତ୍ରୀକୁ ମାନିବ ନାଇଁ ପଛେ ତାଙ୍କ ଚଳଚଳିଆ ମହାବଳିଆଙ୍କୁ ଆଗେ ଜୁହାର– କୋଟି କୋଟି ଦଣ୍ଡବତ । ବହୁଦିନ ପରେ ଏକ ଦୁଇକରି ଗୋଲାମି ଖଟି– ଦିନରାତି ପରିଶ୍ରମ କରି– ସୁପରିନ୍‌ଟେଣ୍ଡେଣ୍ଟଙ୍କ ପିଲାମାନଙ୍କୁ ବିନା ପଇସାରେ ଟିଉସନ୍ କରି, ସମୟ ପଡ଼ିଲେ ବଜାର ସଉଦା କରି– ଅଖିଆ ଅପିଆ ଧାଇଁ– ବଢ଼ି ବଢ଼ି ହୋଇଛି ଚା-ଳି-ଶ । ବର୍ତ୍ତମାନ ଯୁଗରେ ଘରେ ପାଞ୍ଚୋଟି ପ୍ରାଣୀ । ମୁଁ ଆଉ ମୋ ସ୍ତ୍ରୀ ଏବଂ ଏ ଭିତରେ ତିନୋଟି ପ୍ରଡ଼କ୍‌ସନ ହୋଇଛନ୍ତି । ଚାଳିଶ ଟଙ୍କାରେ ଦୁନିଆଯାକର ଖର୍ଚ୍ଚ ମାଡ଼ିପଡ଼େ । ବେଡ଼ି ଉପରେ କୋରଡ଼ାପରି ଶ୍ରୀମତୀଙ୍କ ଯେଉଁ ମଧୁର ସମ୍ବର୍ଦ୍ଧନା ଆସେ ମୋ ପରି ମରଦ ଅର୍ଥାତ୍ ମୁଁ ବୋଲି ସହିଯାଏ– କାରଣ ସମ୍ଭବ ଯା' ହେଉ ନାକ କାନ ମୋଡ଼ି ସହିଯାଏ । ଛୁଆର ମାଆ ସେ, ଭାରି ଟାଣ । ମୁଁ ବିଚରା କାନମୁଣ୍ଡ ଆଉଁଶି ସବୁ ସହିଯାଏ– ଆଶା ନାଁରେ କେହି ମରିପାରେନା । ଆଶାଥାଏ ଯେମିତି– କୋଡ଼ିଏରୁ ଚାଳିଶି ଫେର୍ ଯଦି କଥାଟା ଧରିଲି, "ଭାଇ, ଯାହାହେଉ ତୁମ୍ଭେ ଦେଶ ଦଶର ଉପକାର କଲ, ଆମପରି ଜୀବନଠାରୁ ଯା'ହେଉ ମୁକ୍ତି ପାଇଛ ।" ଆତ୍ମପ୍ରସାଦ ଲାଭ କଲା ସେ, "କଣ production begin କଲଣି" । ମୁଁ ହସି ହସି କହିଲି, "ଏଇ ହେଲା ତିନି– ଆଉ ଅଳ୍ପଦିନ ପରେ ଅବଶ୍ୟମ୍ଭାବୀ ବି" ସେ ହସି କହିଲା । "ବାଃ ବେଶ୍ ତ– ଏ ଭିତରେ ବାପ ହୋଇଗଲଣି ଏଁ" ଖେଁ କରି ହସି ପକାଇଲି । ବର୍ତ୍ତମାନ ଦେବଦୂତ ସେ । ଆଶା ତ ଫେରିଅଛି ଯଦି ଅନ୍ତତଃ ମୋ ସପକ୍ଷରେ ଟିକିଏ କହି ମୋର ଉନ୍ନତି ପଥଟାକୁ ଆହୁରି ସରଳ-ସହଜ-ସୁନ୍ଦର ମାନେ ବେଶୀ କିଛି ଟଙ୍କା ବୃଦ୍ଧି କରି ଅନ୍ତତଃ ମୋ ପକ୍ଷରେ ନହେଲା ମୋ ଛୁଆଙ୍କ ମୁହଁରେ ଦିଓଳି ଜଳଖିଆ ତ ଅନ୍ତତଃ ଦେଇପାରନ୍ତି । କଥାର ଆସରଟା ଜମେଇ ଦେଲି । ଭାବୁଥାଏଁ ଥରେ କେମିତି କହିବି– ମୋର ଅନ୍ତରର ବେଦନା ଶୁଣାଇ ପାରନ୍ତି । ମାସ ଶେଷ, ଯୁଦ୍ଧ ଯୋଗୁଁ ତା' ସଙ୍ଗେ ସଙ୍ଗେ ମୋର ଉତ୍ପାଦନ ହେତୁ ପାନ, ସିଗାରେଟ

ପ୍ରଭୃତିକୁ ବିଦାୟ ଦିଆ ହୋଇଛି । କଣ କରାଯାଏ– କଣବା କରାଯିବ ବନ୍ଧୁ ଚର୍ଚ୍ଚାଟା କେମିତି କରିବି– ପୁଣି ସେ ମନ୍ତ୍ରୀଦୂତ । ପ୍ରତ୍ୟେକ କଥାରେ ଉଗ୍ରସେନର ଉଗ୍ରମୂର୍ତ୍ତିକୁ ପ୍ରଶଂସା କରୁଥାଏ ଯେପରି ଅନ୍ତର ସୌନ୍ଦର୍ଯ୍ୟ ଢାଳି । ସେ ଅଟକିଯାଇ କହିଲା, "ତୁମେ ପରା ଗୌରୀଶଙ୍କର ପାର୍କରେ ସେ ସଭାକୁ ଯାଇଥିଲ ?" "କେଉଁ ସଭାକୁ ?" ନଜାଣିଲା ପରି ବସି ରହିଲି । "ସେଇ କମ୍ୟୁନିଷ୍ଟ– ସ୍ୱଳ୍ପ ବେତନଭୋଗୀ– something bogus" ଆଖିଆଡ଼ୁ ଜୁଳୁଜୁଳିଆ ପୋକ ବାହାରିଗଲା । ସେଦିନ କଚେରିରୁ ଆସୁଥିଲାବେଳେ ଟିକିଏ ଘୂରି ଆସୁ ଆସୁ ବାଟରେ ଭେଟିଲେ ଏଇ ସର୍ବହରା ଦଳ । ଧରି ବସିଲେ, "ଯିବାକୁ ହେବ, ଅଲବତ ଯିବାକୁ ହେବ– ଆମର କଥା ଆମେ ବୁଝିବା ।"– ଭଡ଼ଭଡ଼ିଆ ଦଳ ତ । ଯେଉଁ କଥା କହିଲେ ମୋର ଦିଲଖୁସ୍ । ଭାବିଲି ଦୁନିଆଟାକୁ ଓଲଟପାଲଟ ସତେ କଲେ କି ? ଶୁଣିଗଲି ସଭାରେ ବସି ବହୁତ କଥା– ବହୁତ ଉଚ୍ଚ ଆଶା । ମନ୍ତ୍ରୀଙ୍କ ବିରୁଦ୍ଧରେ ବିଚ୍ଛେର ହେଲା । ଦାୟୀ କେବଳ ଏଇ ଗଭର୍ଣ୍ଣମେଣ୍ଟ– ଶାସନ । ସବୁ କାନ ଡେରି ଶୁଣୁଥାଏ । ଏ ଭିତରେ ଯେ ମୋ ନାମଟା ଯେ... । ବୁଝେଇ କହିଲି, "ଯାଇଥିଲି– ସର୍ବହରା ଦଳ ତ ଜାଣ– ଆଚ୍ଛା ତୁମେ ଜାଣିଲ କେମିତି ?" ହସି କହିଲା, "ଆଃ ସେ କ'ଣ ଅଛପା– ଯା' ହେଉ ଯିବନି ଆଉ । ମୁଁ କହିଲି, "ମୁଁ କ'ଣ ଯାଉଥିଲି କି ?" କହିଲେ "ବେଶ୍ ଭଲକଥା ହଉ ମୁଁ ଯାଏ ବହୁତ ଦିନ ପରେ ଦେଖା କରିବାକୁ ଆସିଲି" ପ୍ରଜାତନ୍ତଟାକୁ ବାହାର କରି କହିଲା, "ଏଇ ବିଶେଷ ସଂଖ୍ୟାଟାକୁ ନିଅ । ବହୁତ କିଛି ଜିନିଷ ସ୍ୱୟଂ ମନ୍ତ୍ରୀଙ୍କ ଲେଖନୀରୁ ନିସୃତ ହୋଇଛି– ବହୁ ବହୁ କଥା– ଦେଶ ବିଦେଶ କଥା ସ୍ଥାନ ପାଇଛି ।" ଭାବିଲି ଯଦି ନ ନିଏଁ– ଯା'ହେଉ ନେବାକୁ ହେବ, ମନ୍ତ୍ରୀ– ମୋର ଭାଗ୍ୟବିଧାତା, ମାନିବାକୁ ହେବ ନିଶ୍ଚେ । ଆଜି ୩୦ ତାରିଖ, ଦୁଇ ତାରିଖରେ ବିଲ୍ ଆସିବ । ଘରେ ପଇସା ତ ନଥିବ ତାହା ସ୍ୱତଃସିଦ୍ଧ, କଣ କରାଯାଏ ? ଆଡ଼ଚାହାଣିରେ ମୂଲ୍ୟଟା ଦେଖିନେଲି ଛରିଅଣା ବିଶେଷ ସଂଖ୍ୟା ।

ମୁହଁଟା ହାଣ୍ଡିପରି କରି ଘରକୁ ପଶିଗଲି । କେମିତିବା ଧାର ବୋଲି କହିବି– ମନା କରିବାର ଜୁ ନାହିଁ– ଦରିଦ୍ରତା ତା'ଠାରୁ ବଳି, ବଡ଼ ମୁନିବର ଖୋଦ୍– । ଗୃହିଣୀ ମୋ ଉପରେ ତାନ ଛିଡ଼ାଇଲେ, "କଣ ଗାଧୁଆ-ପାଧୁଆ ହେବନି କି– ସମୟ ଆସୁଛି ?" ଛିଡ଼ା ହୋଇଗଲି ଗମ୍ଭୀର ହୋଇ, କଣବା କହିବି । କହିଲି, "ଦେଖି

କାଠିଟା” “କଣ କରିବ ଟଙ୍କା ବଳିଚିକି ?” ତମତମ ହେଲେ ସେ । “ନାହିଁ ହେ ତମେ ବୁଝୁନ ଋରିଅଣା ପଇସା ନିହାତି ଦରକାର, ନହେଲେ ନଚଳେ– ଯଦି” “ଟଙ୍କା ବଳିଚି ! ଦେଖୁଛ ମିନିଟାକୁ ଦୁଧଟୋପେ ଦେଇପାରୁନି, ଜର ତିନିଦିନ ହେଲାଣି” କଥାଟା ମାନିନେଲି । ମିନିର ଜ୍ୱର ତିନିଦିନ ହେଲା । ଔଷଧ ଆଣିବାର ସମୟ ପାଇନାହିଁ । କାମ କାମ, ଘରେ ଛୁଆଧରାଠୁ କାଠ କାଟିବା ପର୍ଯ୍ୟନ୍ତ । “ହଇରେ ଦେଇଦିଏ ଭଦ୍ରଲୋକ ପରା ବସିଛି ଦାଣ୍ଡରେ–” “ମ– ଭାରି ଭଦ୍ରଲୋକ– ଦେଖିନାହିଁ– ଛୁଆଟା–” ବନ୍ଦ କରିବାର ଚେଷ୍ଟାକରି ଶ୍ରୀମତୀଙ୍କ ମୁହଁ ନ ବନ୍ଦ ହେଲାରୁ ରାଗିବାର ଛଳ କଲି । ଗୃହିଣୀ ଋବିକାଠିଟା ପକାଇଦେଲେ ରାଗିଯାଇ “ଯା କରୁଛ ତମେ କର ମୋତେ–” ଇତ୍ୟାଦି ଇତ୍ୟାଦି । ବାକ୍ସର ଋବି ଖୋଲୁଛି, ମିନି କହିଲା, “ବାବା, ମାମୁ ଦେଇଥିଲା ପଇସା ବାକ୍ସରେ ଅଛି କି ? ବିସ୍କୁଟ ଆଣିଦବ ।” ଦେଖିଲି ସେଇ ଋରଣା ପଇସା ମୋର ବାକ୍ସର ସୌନ୍ଦର୍ଯ୍ୟକୁ ଅଭିବୃଦ୍ଧି କରୁଛି । ନୟନରୁ ଝରିଲା ଲୁହ । ଋରଣା ପଇସା ଦେବଦୂତ ପାଇଁ ଉଗ୍ରସେନ ହାତରେ ଦେଲି । ସେ ମୋର ଅଜ୍ଞାତରେ ‘ଜୟହିନ୍ଦ୍’ ଶବ୍ଦ ଉଚ୍ଚାରଣ କରି ଋଲିଗଲା । ଘରଣୀ କବାଟ କଣରୁ କହି ଉଠିଲେ, “ଠିକ୍ ହେଇଛି– ଆଜି ବଜାର ପାଇଁ ପଇସା ନାହିଁ କି ଦୁଧ ଟୋପାକ କିଣିବାପାଇଁ ପଇସା ନାହିଁ ।” ମର୍ମାହତ ହେଲି ।



# ଆମ ଯଦୁମଣିର ପ୍ରେମ

ପ୍ରେମିକ ଶିରୋମଣି ଯଦୁମଣି ଦର୍ଶନ ବହିଟାକୁ ଗୋଟାଏ ମିଠା ଚୁମ୍ବନ ଦେଇ ଉଦ୍‌ବେଳ ସ୍ୱରରେ କହିଉଠିଲା, "ହାୟ ମାନସୀ, ଅପରିଚିତା ତମେ କାହିଁ ?"

ବକ୍ଷଟା ଉପରେ ତିନି ଋରିଥର ହାତ ଆଉଁଶି ଆଣିଲା ।

ମୁଁ ମୋର ଚେଆରରୁ ଥାଇ କହିଉଠିଲି, "କ'ଣ ଋଳିଶ ହେଲା କିରେ, ତେବେ ଏଥର ଏକଋଳିଶ ଥର ପ୍ରେମରେ ପଡ଼ିଲୁନା !" ବକ୍ଷଟାକୁ ଭୀଷଣ ଭାବରେ ଋପିଧରି କହିଉଠିଲା ସେ– "ଆରେ ଯୁଗ, ମୋର ଏ ହୃଦୟର ବେଦନା ତା'ରି ଲାଗି ପାଗଳ ହୋଇଯାଇଛି । ମୋ ମନ ଭିତରେ ଶତ ଶତଦଳ ବିକଶି ଉଠିଛି ସେହି ମାନସୀ ପ୍ରତିମା ଲାଗି । ହାୟ ଅପରିଚିତା ତମେ କେଉଁଠି ? ଆଉ ମୁଁ ଏଇଠି ଥାଇ ଏ ହଷ୍ଟେଲର ରୁକ୍ଷ ଖଟ ଉପରେ ଥାଇ ତମର ସ୍ୱପ୍ନ ଦେଖୁଛି– ତୁମେ କେତେ ଦୂରରେ କହ ।" "ଆରେ ଆଜି ତ ନିଶାଟା ବଡ଼ ଜୋର୍ ଧରିଛି ବୋଲି ମନେହେଉଛି ।" ଏଥର ମୋତେ କୁଣ୍ଢାଇ ଧରି କହିଲା, "ଦେଖ ଯୁଗ, ମୋତେ ଥଟ୍ଟା କରନା– ମୋତେ ଯଦି ତୁ ସାହାଯ୍ୟ ନ କରିବୁ ତେବେ ନିଶ୍ଚୟ ମୁଁ ଆତ୍ମହତ୍ୟା କରିବି ।" ମୁଁ ଜାଣେ ପ୍ରେମିକ ଯଦୁମଣିର ସୁଇସାଇଡ଼୍ ମେନିଆ କଥା । ବହୁତ ଥର ସେ ଏଇମିତି ଆତ୍ମହତ୍ୟା କରିବ ବୋଲି ଏ ଝିଅମାନଙ୍କ ପାଇଁ କହିଛି । ଭାବିଲି, ହଁ ଦିନାକେତେ ଲେଖିବ-ପଢ଼ିବ ତା'ପରେ ଆଉ ଗୋଟାଏ ଧରିନେଲେ ମାନେ ବୟାଳିଶକୁ ଧରିଲେ ଏକଋଳିଶର ଆଉ ରହିବ ନାହିଁ ମାୟା ସ୍ୱପ୍ନ । କହିଲି– "ବ୍ୟସ୍ତ ହ'ନା ଦେଖାଯିବ" । "ଆଉ ଦେଖାଯିବ କହିଲେ ହେବନି, ଯୁଗ– ମୁଁ ନିଶ୍ଚୟ ଆତ୍ମହତ୍ୟା କରିବି– ନିଶ୍ଚୟ ।" ଏଥର ଆହୁରି ଆବେଗତାର ସ୍ୱର କଣ୍ଠରେ ।

ଆଚ୍ଛା ହଇରାଣରେ ପଡ଼ିଲି– ସବୁଥର ପରି ଏ ଝିଅଟାକୁ ଦେଖିଛି ସଂପ୍ରତି ଏତେବଡ଼ ସ୍ନେହ କାହିଁକି ? କେଉଁ ଗୋଟାଏ ଝିଅକୁ ଦେଖିଛି ସେଇଥିରେ ଏତେବଡ଼ କଥା । ଜୀବନରେ ଗୋଟାଏ ଝିଅକୁ ସେ ଭଲ ପାଇପାରିନି । ଯେଉଁଦିନ ଗୋଟାଏ ଝିଅକୁ ଦେଖିବ ତାକୁ କହିବ ଉର୍ବଶୀ ସେ । ତାର ତୁଳନା ନାହିଁ– ତାର କଳ୍ପନା-ଚିନ୍ତା ଅପରିସୀମ । ସାଙ୍ଗେ ସାଙ୍ଗେ ଲେଖିଯିବ କବିତା । ସେ ସାଙ୍ଗେ ସାଙ୍ଗେ କହିବ,

"ଜୀବନରେ ଏମିତି ଟୋକୀ ଖଣ୍ଡେ କେବେ ଦେଖିନାହିଁରେ । ତାକୁ ଯଦି ନ ପାଏ ନିଶ୍ଚୟ ମୁଁ ଆତ୍ମହତ୍ୟା କରିବି – ନିଶ୍ଚୟ । ଆଉ ଏଥିରେ କିଛି ସନ୍ଦେହ ନାହିଁ ।" ତା'ପରେ ନବାଗତା ପଛରେ ଲାଗିଯିବ କିଛିଦିନ । ଘରକୁ ଯାଇ ବନ୍ଧୁବାନ୍ଧବ ସଂବନ୍ଧ କରି ନିହାତି ପରିଚିତ ହେବ ଦିନ ଦି'ଟାରେ । ଏ ଭିତରେ ଆଉ କେଉଁ ଝିଅକୁ ଦେଖିଲେ ଆଉ ଗୋଟାଏ ଉର୍ବଶୀ ଆଗରେ ଠିଆହେବେ ତାର – ତା ପଛରେ ଲାଗିଗଲା, ଏହିପରି ତାର ଗୋଟିଏ ହେଲେ ଲାଗିରହିଥିବ ସବୁଦିନେ । ଆଉ ସୁଇସାଇଡ଼ କରିବା କଥାଟା ନିହାତି ସାଧାରଣ କଥା । ପାର୍ଥସାରଥି କହେ, "ଥରେ ଆତ୍ମହତ୍ୟା କର, ତା'ପରେ ଯାଇ ଦେଖାଯିବ ।"

ଯଦୁମଣି କହିଉଠିଲା, "ନା-ନା ଅସହ୍ୟ, ଅସହ୍ୟ । ମୁଁ ଏଥର ନିଶ୍ଚୟ ସୁଇସାଇଡ଼ କରିବି ।" ଏଥର କହିଲି, "ଶୁଣ ଯଦି ପରୀକ୍ଷାରେ ପାସ୍ କରିବା ଇଚ୍ଛା ଅଛି ବକବକ କରନା । ଚୁପ୍‌କରି ପାଠ ପଢ଼ ।" ଏଥର ଆଉ କହିବାର କିଛି ନାହିଁ, ଦୌଡ଼ିଯାଇ ବାକ୍ସରୁ କଳା ଶିଶିଟାଏ ଦେଖାଇ କହିଲା, "ଏଇ ଦେଖ ବିଷ– ବିଷ । ମୁଁ ଆଉ ସହ୍ୟ କରିପାରେନା – ଏଇଥର ବିଷ– poison" ସତକୁ ସତ ଶିଶିଟାକୁ ଖୋଲିବାକୁ ଆରମ୍ଭ କଲା । ଆଚ୍ଛା ହଇରାଣରେ ପଡ଼ିଲି । ଆଚ୍ଛା କଥା ଇଏ । ଯଦି ସତକୁସତ ସେ ଖାଏ ! ମୁଁ ହାତଟା ଧରି ପକାଇ କହିଲି, "ମୋ ରାଣ, ସେ କାମ କରନା ଯଦୁମଣି ।" "ତେବେ ତୁ ସାହାଯ୍ୟ କରିବୁ କହ ।" "ହଁ ବାବା କରିବି– କରିବି– ନିଶ୍ଚୟ କରିବି । ତୁ ସେଇଟା ରଖ ତ, ବନ୍ଦ କର ।" ବନ୍ଦ କଲା ସେ । କହିଲି, "ତୁ ତ ଗୋଟାଏ ନିହାତି... କଲେଜର ଅନିମା, ସୁଷମା, କମଳାଠାରୁ କାନ୍ତି, ଅବନ୍ତି, କରବୀ ସୁମିତ୍ରା ପର୍ଯ୍ୟନ୍ତ ଆଖି ପକାଇ ସହରର ଗଳି ପର୍ଯ୍ୟନ୍ତ ପହଞ୍ଚିଗଲୁଣି । କଣ ଦେଖିଛୁ କହ ।" ଏଥର ଆରମ୍ଭ କଲା ଯଦୁମଣି "ବ୍ରଜ ପାଖରୁ ସେ ଦର୍ଶନ ବହିଟା ନେଇ ଆସୁଆସୁ ଦର୍ଶନ ଆରମ୍ଭ ହେଲା । ସିନେମା ପାଖରେ ଦର୍ଶନ କଲି କେହି ଜଣେ କୁନ୍ତଳଶ୍ରୀକୁ । ସେ କେହିକୁ ବହୁଦୂର ପର୍ଯ୍ୟନ୍ତ ଗୋଡ଼େଇ ଯାଇଥିଲି କିନ୍ତୁ ସନ୍ଧାନ ପାଇନି– ହାହୁତାଶରେ ବକ୍ଷଟାକୁ ଚିପିଧରି ଫେରିଚି କଲେଜ ହଷ୍ଟେଲକୁ । ଝିଅଟିର ରୂପ ଅକଥନୀୟ– ଦେହର ଗଠନ ଶ୍ରୀରଙ୍ଗିମାକୁ ଯେ କେହି ପ୍ରଶଂସା କରିବ– ତାର ତୁଳନା ନାହିଁ– କଳ୍ପନା ନାହିଁ । ସେ ବିରାଟ ଚିନ୍ତାର ବିରାଟ ତାଜ– ସେ ରୂପନଗରୀର ରାଜକୁମାରୀ– ସେ ସର୍ବଶ୍ରେଷ୍ଠ ସୁନ୍ଦରୀ– ସର୍ବଶ୍ରେଷ୍ଠ..."

"ବନ୍ଦକର, ବନ୍ଦକର ବାବା ଏ ବିଶେଷଣଗୁଡ଼ାକ । ଅନ୍ୟ ଉପାୟରେ ଖଟେଇବୁ ଯେ କିଛି ମିଳିବ ।" ଏଥର ଯଦୁମଣି ଗୋଡ଼ ଦି'ଟା ଧରିପକାଇ କହିଲା, "ତୋର ସ୍ନେହରେ ବଞ୍ଚା ମୋତେ– ମୋତେ ପ୍ରାଣ ଦେ– ନହେଲେ ମୁଁ..."

କହିଲି, "ଆଚ୍ଛା ଏଇଥର ଅଟକିବୁ ତ, ଏଇ ଏକଚାଳିଶ ନମ୍ବରରେ ମୁଣ୍ଡି ମରିବ ତ ! ଏହାପରେ ଯଦି ଆଉ ପ୍ରଶ୍ନ ଉଠାଉ ତେବେ ଜାଣିଥା..." ସେ କହିଲା, "ନା ଭାଇ, ପ୍ରଥମ ଦେଖାରେ ତା ସାଙ୍ଗରେ ଏକଦମ୍ ଚାରିଆଖି ହୋଇଯାଇଛି– ତାକୁ ବିବାହ କରିନେବି । ତାର କି ସୁନ୍ଦର ନୟନ ଯୁଗଳ, ତରଳ ଚହଳ କଟାକ୍ଷ । ଯୁଗ ତୁ ବୁଝିପାରିବୁନି ମୋ ହୃଦୟରେ ସେ ସୃଷ୍ଟି କରିଛି ଝଞ୍ଜା ଝଡ଼ତୋଫାନ । ତାର କଟାକ୍ଷରେ ମୋର ତ୍ରିଭୁବନ ଚଞ୍ଚଳ ହୋଇ ଉଠିଛି ।" କହିଲି, "ତୁଟା ଗୋଟାଏ ନିହାତି ବିକଳିଆ କବି ! ! ତୁ କଣ ଗୋଟାଏ ମେଥଡ଼ ଧରିଛୁ, ଯେଉଁ ଝିଅକୁ ଦେଖିଲେ ତା ପଛରେ..." କହିଉଠିଲା ଯଦୁମଣି, "ଦେଖୁଛୁ ମୁଁ କେତେ କବିତା ଲେଖିଯାଉଚି । କୋଟିଏ ଝିଅକୁ ଦେଖି ଗୋଟାଏ ସ୍ୱପ୍ନ– ଗୋଟାଏ କବିତା, ଦି ତିନିଟା ଗଳ୍ପ, ତାପରେ ଶେଷ । ସେମିତି ସାଙ୍କେତିକରେ ହିସାବ କରିଦେ ।" ଦେଖିଲି ପିଲାଟାର ଗୋଟାଏ ଦୋଷ ଅଛି । ହୁଏତ ନକ୍ଷତ୍ର ନହେଲେ ରାଶି । ସେ କହିଉଠିଲା, "ଭାଇ, ମୁଁ ତାକୁ ବିବାହ କରିବାକୁ ଚାହେଁ । ଏହାକୁ ବିବାହ ନ କଲେ..." । ଡରମାଡ଼ିଲା ଯଦି ବିଷ ଖାଏ– ସତକୁ ସତ ତେବେ ଜୀବନଟା ତ ନଷ୍ଟ ହେବ । ବାପମା'ର ଏକମାତ୍ର ସଞ୍ଜାଳି ଶ୍ରୀମାନଙ୍କର ଶେଷ ହେବ । ଏ ଭିତରେ ପ୍ରସ୍ଥାନ କରିସାରିଛି ପ୍ରେମିକ ଯଦୁମଣି । କିଛି ସମୟ ପରେ ପ୍ରବେଶ କଲା ଗୋଟାଏ କାଗଜ ଠୁଙ୍ଗା ଭିତରେ ଚିନାବାଦାମ ପୂରେଇ । "ନେ- ନେ, ଦିଟା ନେ– ଖା" । ତାର ପରବାୟ ନାହିଁ । ମୁଁ ଭାବିଚାଲିଛି କଣ କରିବି– ଲୋକଟା କେମିତି ବଞ୍ଚିବ । "ଆରେ ନେ" । ଦି'ଟା ହାତରେ ନେଲି । ଠୁଙ୍ଗାଟାକୁ ଦେଖି କହିଲି, "ଏ କଣ କବିତାଟା କିରେ"– ସେ ହସି କହିଲା– "ହଁମ ସେଦିନ ସେ ଷ୍ଟେସନରେ ଯେଉଁ ଟୋକୀଟା ଦେଖି ନ ଥିଲି ତା'ରି ଲାଗି ଖଣ୍ଡିଏ କବିତା ଲେଖିଥିଲି– ସେଇଟା" "ଚମତ୍କାର– ଯାହାପାଇଁ ଏତେବଡ଼ ଚିନ୍ତା, ଯାହାକୁ ନେଇ ପ୍ରଣୟମଞ୍ଜରୀ ଗୁଞ୍ଜରି ଉଠିଥିଲା ତାର ପରିଣତି ଶେଷରେ ଚିନାବାଦାମ ଠୁଙ୍ଗା– ଧନ୍ୟବାଦ !" ପଚାରିଲା ସେ, "କଣ କିଛି ବୁଦ୍ଧିର ସନ୍ଧାନ ପାଇଲୁ ? କହିଲି, ମୋତେ ଆଉ ଡିଷ୍ଟର୍ବ କରନା– ଟିକିଏ ଭାବିବାକୁ ଦେ ।" "ଚଞ୍ଚଳ ଭାବ, ଭାଇ !" ଗୋଡ଼ ଦି'ଟା ଧରିପକାଇ କହିଲା, "ମୋତେ ବଞ୍ଚା ଭାଇ, ବଞ୍ଚା !"

ଅନେକ ଖୋଜାଖୋଜି ପରେ ଝିଅର ଠିକଣା ମିଳିଲା । ଝିଅଟିର ନାମ ଶାନ୍ତି । ବେଶ୍ ସୁନ୍ଦରୀ– ଅନ୍ତତଃ ଯେ କେହି ଶସ୍ତାଦରର କଲେଜ ଯୁବକ-ପ୍ରେମିକ ଭଲପାଇ ପାରିବ । ତା' ପର କଥା ପରିଚୟ । ଯଦୁମଣି ଧରି ବସିଲା, "ବାହାଘର ପ୍ରସ୍ତାବ ପକା, ମୁଁ ତାକୁ ଭଲପାଏ, ସେ ମୋର ହୃଦୟର ଜ୍ୟୋସ୍ନା, ପ୍ରାଣର ମନ୍ଦାକିନୀ, ଖରାଦିନର ଆଇସ୍କ୍ରିମ୍ ।" ମୁଁ କହିଲି, "ବେଶ୍ କଥା" । ଯଦୁମଣିର ବାପା ପାଖକୁ ଚିଠି ଲେଖିଦେଲି । ସେ ଆସିଲେ । ଦାସ ମହାଶୟଙ୍କ ଘରେ ସମ୍ବନ୍ଧ ପାତିବାକୁ ଆଗ୍ରହାନ୍ୱିତ ଥିଲେ । ଫଳତଃ ସୁବିଧା ମଧ୍ୟ ହୋଇଗଲା ।

ଦିନାକେତେ ଯଦୁମଣି କଲମରୁ କେତେ କବିତା-ଗଳ୍ପ ବାହାରିଲା । ସେ ପାଗଳ ପରି ଗାଇଉଠିଲା ଘରିଆଡ଼େ । ଶାନ୍ତିର କମନୀୟ ରୂପର କଥା– ସେ କେତେ ସୁନ୍ଦର କେତେ ଭଲ । ପିଲାଏ ଭାବିଲେ ଶାନ୍ତିକୁ ପାଇଲେ ଯଦୁମଣି ଘରମଣି ହୋଇଯିବ । ପିଲାଟା ବାଗକୁ ଆସିଲା ବୋଲି ଅଧ୍ୟାପକମାନେ ଭାରି ଖୁସିହେଲେ ।

ଶୁଭବେଳାରେ ବାହାଘରଟା ଯୋଗାଡ଼ ହେଲା । ପରୀକ୍ଷା ଡରରେ କେହି ଆସିଲେ ନାହିଁ । ମୁଁ ଯେତେବେଳେ ସମ୍ବନ୍ଧଟା ପାତିଛି ମୋତେ ବାଧହୋଇ ଆସିବାକୁ ହେଲା । ବରଯାତ୍ରୀ ହୋଇ ବାହାରିଲି । ଷ୍ଟେସନରେ ପହଞ୍ଚିଲୁ । ଯଦୁମଣି କହିଲା, "କେଡ଼େ ସୁନ୍ଦର ଝିଅଟିଏ ରେ ! ଜୀବନରେ କେବେ ଦେଖିନାହିଁ ।" ଦେଖିଲି ଅଦୂରରେ ଠିଆହୋଇଛି ସୁନ୍ଦରୀ– ତନ୍ୱୀ କିଶୋରୀଟିଏ । ଫେର୍ ସେ ରୋଗ ବାହାରିଲା ଭାବି ମୋତେ ଡର ମାଡ଼ିଲା । "ବନ୍ଦକର ସେସବୁ କଥା ।" ଏଥିରେ ଦୁଃଖିତ ହେଲା ଯଦୁମଣି, ମୁଁ ଲକ୍ଷ୍ୟ କରିଛି । ସେ କହିଲା, "ଭାଇ, ମେଲ୍‌ରେ ଯିବାକୁ ସୁବିଧା କର । ଟାଉନ୍‌ରେ ମୋର ଟିକିଏ କାମ ଅଛି । ଏ ପାସେଞ୍ଜରଟାରେ..." ମୁଁ ଯଦୁମଣିର ବାପାଙ୍କୁ କହିଲି । ସେ ଅମତ ହେଲେ ନାହିଁ । କହିଲେ "ଦେଖ ବାବା, ରାତି ବାରଟାରେ ଲଗ୍ନ, ଯେମିତି ହେଉ ପହୁଞ୍ଚ ସେତେବେଳକୁ । ମୁଁ ସମସ୍ତଙ୍କୁ ନେଇ ଯାଉଚି । ମେଲ୍ ତ ରାତି ଏଗାରଟାରେ ପହୁଞ୍ଚେ । ଷ୍ଟେସନ୍‌ରେ ଲୋକ ଥିବେ, ସେମାନେ ପାଛୋଟି ନେଇଯିବେ ।" ସେ ପ୍ରସ୍ଥାନ କଲେ ।

ମେଲ୍ ଆସିଲା । ମୁଁ ଓ ଯଦୁମଣି ଗୋଟାଏ କମ୍ପାର୍ଟମେଣ୍ଟରେ ଉଠିଲୁ । ଆମ ପଛରେ ସେଇ ତନ୍ୱୀ କିଶୋରୀ ମଧ୍ୟ ତାର କେହି ସମ୍ବନ୍ଧୀୟକୁ ନେଇ ପ୍ରବେଶ କଲେ ।

ମୋତେ ଭାରି ଥକ୍କା ମାଡୁଥାଏ । ମୁଁ ଏକଦମ୍ ଶୋଇପଡ଼ିଲି । ଯଦୁମଣି ବେଳେବେଳେ ମୋତେ ଲକ୍ଷ୍ୟ କରୁଥିଲା ଓ ସେ ଝୁଅକୁ ଗ୍ଦହିଁରହିବାର ମୁଁ ଦେଖୁଥିଲି ।

ନିଦଟା ଗ୍ଦଉଁକିନା ଭାଙ୍ଗିଗଲା । ଉଠିପଡ଼ି ଦେଖେଁ ଇଞ୍ଜିନ୍‌ଟା ସେଁ ସେଁ କରୁଛି । ଝରକାପାଖରେ ଦେଖେ ଠିକ୍ ଷ୍ଟେସନରେ ଗାଡ଼ିଟା ରହିଛି । ଭାବନା ପଡ଼ିଲା, ଯଦୁମଣି କାହିଁ ? ପାଇଖାନା ଯାଇଥିବ ବୋଧହୁଏ ମନେକରି ମୁଁ ଜିନିଷପତ୍ର ସଜଡ଼ାସଜଡ଼ି କଲି । ଇତ୍ୟବସରରେ ଷ୍ଟେସନରେ ବାଜା ବାଜିଉଠିଲା । ଶଙ୍ଖ ଶୁଭିଲା । କମ୍ପାର୍ଟମେଣ୍ଟ ଦୁଆରମୁହଁରେ ଲୋକଭିଡ଼ । ବର ଦେଖିବେ । ମୁଁ ପାଇଖାନାଟା ଧଡ଼ଧଡ଼ କଲି । ପାଇଖାନା ଦରଜାଟା ଖୋଲା ଥିଲା । ଆରେ ଯଦୁମଣି ଗଲା କୁଆଡ଼େ ? ବଡ଼ ହଇରାଣ । ମୋତେ ଦେଖି ବରବୋଲି ଠଉର କଲେଣି । ଆଚ୍ଛା ବିପଦ । ମୁଁ ମନା କଲି "ବର ନାହିଁ, ପଳେଇଛି ।" ମୋ କଥା ଶୁଣୁଛି କିଏ ? ଭାବୁଥାଏ, ଭଗବାନ ଗାଡ଼ି ଛାଡ଼ିଦିଅନ୍ତା କି ! ଆରେ ଯଦୁମଣିଟା ଗଲା କୁଆଡ଼େ ? ନିହାତି ହୋପ୍‌ଲେସ୍ । ଶେଷରେ କହିଲି 'ଢୋଇଁ ମାନ କରୁଛି ।' କଣ କରେ, ଶ୍ୱଶୁର ମହାଶୟ ଗାଡ଼ି ଭିତରେ ମୋତେ ସଙ୍ଗୋଳିବାକୁ । ବିଛଣାଟା ଅଣ୍ଡାଳୁ ଅଣ୍ଡାଳୁ ଚିଠି ଖଣ୍ଡେ ଗଡ଼ିପଡ଼ିଲା । ଲେଖିଛି ସେ ହତଭାଗା ପ୍ରେମିକ ଶିରୋମଣି ଯଦୁମଣି– "ଭାଇ ଯୁଗ, କଣ କରେଁ ମୋର ଦୋଷ କ୍ଷମା କରିବୁ । ମୁଁ ଶାନ୍ତିକୁ ବିବାହ କରି ସୁଖୀ ହୋଇପାରିବି ନାହିଁ । ଯେଉଁ କିଶୋରୀଟିକୁ ତୋତେ ଦେଖାଉଥିଲି ମୁଁ ତାକୁ ଗ୍ଦହେଁ– ତା ପଛରେ ଯାଉଛି । ସେ ଉର୍ବଶୀ-ସୁନ୍ଦରୀ, ସରଗର ପାରିଜାତ– ହୁଏତ ମୋ ବଦଳେ ବିବାହ କରିନେବୁ ।... ଇତି ।

ମୋ ମୁଣ୍ଡରେ ତେନ୍ତୁଳିଆ ବିଛା କାମୁଡ଼ିଲାଣି । କିଛି କହିବାକୁ ନ ଦେଇ ପାଲିଙ୍କିରେ ବସେଇଲେ । ସେତେବେଳକୁ ମୋ ଦିହ ବରଡ଼ାପତ୍ର ପରି ଥରୁଥାଏ । ବେଦିରେ ହାତଛନ୍ଦାଛନ୍ଦି ସମୟରେ ଯଦୁମଣିର ବାପା ଚିତ୍କାର କରି ଉଠିଲେ, "ଏ ତ ମୋ ପୁଅ ନୁହଁ" ! ଆଚ୍ଛା କଥା ହୁଲସ୍ଥୁଲ ପଡ଼ିଗଲା– ଏତେବେଳଯାକେ ସେ ଘୁମଉ ଥିଲେ କି କଣ କେଜାଣି । ଚିଠିଖଣ୍ଡଟି ଧରେଇ ଦେଲି ।

ଆଜି ବି ଶାନ୍ତି ମୋ ଉପରେ କ୍ରିଟିସିଜମ୍ ପାସ୍ କରେ– "ତମେ ବାଇଗ୍ଦନ୍ସ" ।



# ଦାଗ

ଚମକି ଉଠିଲା ଶିଖା– ମୁହଁରେ ଗୋଟାଏ ବ୍ରଣ ବାହାରିଛି । ଲାଲ ପଡ଼ିଯାଇଛି ଚାରିଧାର । ପମେଣ୍ଟର ପଲସ୍ତରା– ଘଡ଼ିକୁ ଘଡ଼ି ସ୍ନୋ ପାଉଡ଼ର ସେ ଦାଗଟାକୁ ଲୁଚେଇ ପାରୁନି । ଆହୁରି ଥରକୁ ଥର ରଗଡୁଛି– ଗୋଟିଏ ବ୍ରଣ । ତାର ସୁଷ୍ଠୁ ସୁନ୍ଦର ଡୋଫା ମୁହଁଟିରେ ଗୋଟିଏ କଳଙ୍କ । ରଗଡ଼ି ହୋଇ ରକ୍ତ ଝରିଛି– ଆଉ ସହିପାରିଲା ନାହିଁ ଶିଖା । କଇଁ କଇଁ କାନ୍ଦି ଉଠିଲା ।

ମାଲିକାଣୀ ବୁଢ଼ୀ ଆସି କହିଲା– କାନ୍ଦୁଛ କାହିଁକି, କିସ ହେଲା କି– କିସ କାମୁଡ଼ି ଦେଲା କି ?

ଶିଖାର କାନ୍ଦ ଆସିଲା ନାହିଁ । ଏଇ ଦାଗଟା କେଡ଼େ ବଡ଼ କଳଙ୍କ ଏ ସରସ ଜୀବନରେ ଭାବିପାରୁନି ସେ । ଆଜି ରାଜକୁମାର ରାଜେନ୍ଦ୍ର ଆସିବେ । ଦେଖି କ'ଣ କହିବେ । ସତକୁ ସତ ତାର ଜର ଆସିଯାଇଛି । ତାର ରୂପ ଅଛି, ଅଛି ଦପଦପ ଯୌବନ । ସେଇ ଯୌବନ ନିଶାରେ ପାଗଳ ରାଜକୁମାର ରାଜବାଟୀକୁ ସେ ଆସିଛି । ପ୍ରମୋଦ ଉଦ୍ୟାନରେ ରାଜକୁମାର କରିଦେଇଛନ୍ତି ତାର ରହଣି । ଚିର ବସନ୍ତ ସେଇଠି । ଗୋଲାପ ଧଳା କଳା ନାଲି ମଞ୍ଜୁଳ କରିଦେଇଛି । ଝରଣାର ତାଳେ ତାଳେ କେତେ ପଶୁପକ୍ଷୀଙ୍କର ଆବାସ । ମନଟି କୁଣ୍ଢେ ମୋଟ ହୋଇଥାଏ । ଯାହା ଶିଖାର ପ୍ରୟୋଜନ– ଗୋଟିଏ ମିନିଟ୍‌ରେ ପାଇଛି । ଅଛି ତାର ରୂପର ଆନନ୍ଦ ଶିଖା ।

ଭାବିପାରେନା କାହାର ଅଇଁଠା ସେ !– କିରେ ବେଟିଆ, କାନ୍ଦୁଛୁ କିସ । ହେ ଉଠ– ଉଠ ଓସ୍ତାତ୍ ବୁଢ଼ାର ଡାକ । ସେ ଗୀତ ନାଚ ଶିଖାଉଛି । ରାଜଦରବାରରୁ ଶହ ଶହ ହଜାର ହଜାର ଟଙ୍କା ଇନାମ୍ ପାଇଛି । ଶିଖା ପାଇଁକି ଖର୍ଚ୍ଚ କରିଛି । ଭବିଷ୍ୟତ ପାଇଁ, ଆଉ ସବୁ ଦେଇଛି । ମନ ଖଟିରେ– ଅପନ୍ତରା ଏକ ଖପରଲି ଘର । ତଳେ ନର୍ଦ୍ଦମାରେ ରାଶି ରାଶି ଲାଙ୍ଗୁଡ଼ିଆ ପୋକ– ଆଉ ଉତ୍କଟ ଗନ୍ଧ । ନର୍ଦ୍ଦମାର ଧାରେ ଧାରେ ଭଙ୍ଗା ମଦ ବୋତଲର ସ୍ତୂପ । ସାଧାରଣ ମନରେ ଶଙ୍କାକୁଳ ହୁଏ । ବାରବନିତାର ସମ୍ପଦ ସେ । ରାତି ଆଠ ପାରି ହେଲେ– 'ଜିଆ ବେକରାର ହୈ" କଣ୍ଠର ମାତାଲ

ଆବାଜ । ପେନ୍‌ସିଲିନ୍ କମ୍ପାନୀ ଆଶ୍ରୟୀ ସୁନ୍ଦରୀ ଯୁବତୀ– ଅବଗୁଣ୍ଠନରେ ସୁନ୍ଦର ମଖମଲ ଶାଢ଼ି– ନୟନରେ କଜ୍ଜଳରେଖା ସବୁ ସୁନ୍ଦର– ସବୁ ଅମାପ । ନୟନର ଦ୍ରାଘିମାରେ ହୁଏତ କିଏ ଧରାପଡ଼େ । ଜାଲ କିନ୍ତୁ ବିସ୍ତୃତ ।

ଗନୋରିୟା ସିଫ୍‌ଲିସର ଚରାଭୂଇଁ । ଆର୍ଦ୍ର କଣ୍ଠର ଫେଣାୟିତ ଅଭିମାନ, ଯାହାକି ସାର୍ବଜନୀନ । ହୁଏତ ପ୍ରଥମେ ପ୍ରଥମେ କିଏ ଆସିଲେ– ତମେହିଁ ମୋର ପ୍ରଥମ ନାୟକ କହିବାକୁ କେହି ଭୁଲ୍ ନକରେ ।

ସକାଳ ସଂଜରେ ଖୁଁ ଖୁଁ ଶବ୍ଦ । ଯକ୍ଷ୍ମା ରକ୍ତର ଫୁଆରା ଖେଳିବୁଲେ ନର୍ଦ୍ଦମାରେ । ମଣିଷ ବଞ୍ଚିବାକୁ ଚାହେଁ ଉପଭୋଗରେ । ଯଉବନଟା ଟିପେ– ସେଇ ଟିପକ ଭିତରେ ଆମନ୍ତ୍ରଣ କରିବାକୁ ଚାହେଁ ଏ ପୃଥିବୀକୁ । ବିରାଟତା ସେଇ ଭିତରେ ଆହ୍ଲାଦିତ ପ୍ରଲୋଭନ– ମାଂସର ମାଂସ ନିମନ୍ତ୍ରଣ । ସେଇ ତ ଆଶ୍ଚର୍ଯ୍ୟ ।

ରମଜାନ ବୁଢ଼ା ଘରେ ଚାନ୍ଦ ଉଇଁଛି- ଆଜି ନିଜେ ରାଜକୁମାର । ଯୌବନର ନୂତନ ପରଶ ପାଇଛି ଶିଖା ସେତେବେଳେ । ରମଜାନ ଶିଖାକୁ ପାଇଛି ଗୋଟିଏ ଗଳିରୁ । ସେ ବି ଅକ୍ଷତ, ଅବୈଧ । କେଉଁ ଦୁର୍ବଳ ମୁହୂର୍ତ୍ତରେ ଜନ୍ମ ଶିଖାର– ଶିଖା ହୁଏତ ଜାଣିନି । ମା ତାର ତାକୁ ଅଣ୍ଟିରେ ଭରି ଦି'ବରଷ ପ୍ରତିପାଳନ କରି ମରିଛି । କୁମାରୀ ମା– ଅବୈଧ ଶିଶୁ । ସୁନ୍ଦର– କି ସୁନ୍ଦର ଦେଖିବାକୁ ! କେଉଁ ସୁପୁରୁଷର... ରମଜାନ ଶିଖାକୁ ଗୀତ ଶିଖାଇଛି, ନାଚ ଶିଖାଇଛି । ଅର୍ଥ ଆସିଛି । ମଦ ବୋତଲ ଭର୍ତ୍ତି ହୋଇଛି– ସେ ଦିନର ଅପନ୍ତରା ଗଳିର ଶିଖା ଆଜି ରାଜରାଣୀ । ହଁ ସେଇଆ ସେ ମନେକରେ ।

ମନେପଡ଼େନା– ଅଧପାଏ ଗୋସ୍, ଚାରି ପଇସାର ତେଲ, ଦୁଇ ପଇସାର ରସୁଣ, ଟଙ୍କାରେ ସେରେ କଥା ସବୁ ହୁଏତ ଭୁଲିଯାଇଛି । ଭୁଲିଯାଇଛି ହାଡ଼କଟା ଲେନ୍ ପାନବାଲା– ସେ ଦିନର ଚିନାବାଦାମବାଲା– ଆଉ ସେଇ ରମିଆଁ କଥା ଅନ୍ଧକରେ ତାର ଯୌବନଟା ବିକି ପାରିଥିଲା । ରମିଆଁ କହିଲା ଚାଲ ସାଦି କରିନେବା, ପଳେଇବା । ରମିଁଆଟା ତୁଚ୍ଛା ପାଗଳା । ସିନେମା ପୋଷ୍ଟର ଲେଖି ଚାରଅଣା ଛଅଣା ପାଏ– ସେଇଥିରେ... ଆଜି ବି ହସମାଡ଼େ ଶିଖାକୁ । ମନେହୁଏ ଥରେ ଡାକନ୍ତା, ରମିଆଁକୁ ଦେଖାନ୍ତା– ରାଜକୁମାର କେତେ ସୁନ୍ଦର ଗେଲ କରନ୍ତି । ଏକ ଶରତ କାଳ ରାତିରେ ସେମାନେ ମୋଟର ନୌକାରେ କେତେଦୂର ଯାଆନ୍ତି, ଯାଇପାରନ୍ତି ।

କାନ୍ଥ ଠଣାରେ ଆଉ ସେ ଟୁକରା ଟୁକରା ଲକ୍‌ସ ସାବୁନ– କାଞ୍ଚନ ତେଲ ଓ ଶସ୍ତା ସୁପ୍ରଭା ସେଣ୍ଟ ନାହିଁ । ଅତର ତେଲ, ଟମ୍‌କୋ ସେଣ୍ଟ, ଇଭିନିଂ ଇନ୍ ପେରିସ୍, ହେଜଲିନ୍ ସ୍ନୋ– ଗଣ୍ଡା ଗଣ୍ଡା ଥୁଆ ହୋଇଛି । ସେ ଆଜି ପ୍ରମୋଦ ମହଲରେ । ଘଡ଼ିକୁ ଘଡ଼ି ଶାଢ଼ି ବଦଳାଏ– ଘଡ଼ିକୁ ଘଡ଼ି ଗୀତ ଗାଏ ।

ଓସ୍ତାଦ ପାଏ ମଦ ଖର୍ଚ୍ଚ । ଯାଃ ଜୀବନଟା ରହିଲା । ପ୍ରିୟସାଥୀ ମଦକୁ ନେଇ ତାର ମୃତ୍ୟୁହେଉ । ଏହାହିଁ ତ ତାର ପ୍ରୟୋଜନ । ଏହାହିଁ ତ ତାର ଦାବି– ସେତକ ପାଇଛି ସେ ।

–ଆଗୋ ଉଠଗୋ ଉଠ, ଛାର ବ୍ରଣଟାଏ ପାଇଁ ଏତେ ଭାବନା । ଭଲ ହୋଇଯିବ ସବୁ, ଉଠ । ଶିଖା ଉଠିଲା । ନୟନର ଲୋତକରେ ଘଷିଯାଇଛି କଜ୍ଜଳର ଗାର । ଆଜି ସନ୍ଧ୍ୟା ଆଗତପ୍ରାୟ । ଆଜି ମହାରାଜ ନାହାନ୍ତି– କାଲି ହୁଏତ ଆସିବେ । କାଲି ଏ ବ୍ରଣକୁ ଦେଖି ଚମକି ପଡ଼ିବେ ନାହିଁ ! ଘୃଣା କରିବେ ନାହିଁ ! ପୁଣି କାନ୍ଦିଉଠିଲା...

ମାଳିକାଣୀ ରାଧା କହିଲା– ମାଗୋ, ତୁମେ ନୂଆ ଆସିଛ ଏ ପୁରକୁ– ଗୋଟିଏ ବ୍ରଣରେ ଚମକି ପଡ଼ିଛ । ଜାଣିଛ ତମର ଉପର ପୋଷାକ ଯେବେ ପୁରୁଣା ହୋଇଯିବ, ଅବହେଳିତା ହୋଇ ପଡ଼ି ରହିବ । ଶିଖା ଋହିଁଲା– କଣ କହୁଛୁ ତୁ !

ରାଧା କହିଲା– ତୁମେ ବୁଝନା, ଏମାନେ ରାଜା, ଧନୀଲୋକ । ଏମାନଙ୍କର ଅଏସ୍ ଅଛି– ଆନନ୍ଦ ଅଛି । ଏଇ ଯେଉଁ ଦାସଦାସୀ ଦେଖୁଛ ଏ ପୁରରେ, ମୁଁ ବି ଦିନେ ତମରି ପରି ଯୌବନ, ତମରି ପରି ପ୍ରେମ ନେଇ ଏଇ ଘରକୁ ଆସିଥିଲି । ଦିହରେ ଛଳଛଳିଆ ଯୌବନ ଦେଖି ଟଙ୍କାର ମୋହରେ ମୋ ମାଆ ଏଠାରେ ଛାଡ଼ି ଦେଇଥିଲା । ସେ ବହୁ ଅତୀତର କଥା । ରାଜାଙ୍କର ସେତେବେଳେ ପ୍ରଥମ ଯୌବନ । ସେଇ ଯଜ୍ଞରେ ମୁଁ ପ୍ରଥମେ ବଳି ପଡ଼ିଥିଲି । ଏହାପରେ ବହୁ ଆସିଛନ୍ତି, ଯାଇଛନ୍ତି । ତମେ ଆସିଛ– ଆଜି ଗୋଟିଏ ବ୍ରଣପାଇଁ ଚିତ୍କାର କରୁଛ । କାଲି ତମକୁ ଫଟା ଶାଢ଼ି ଖଣ୍ଡିଏ କେହି ଦେବେ ନାହିଁ । ବଡ଼ଲୋକର ସଉକ ।

–ଅନ୍ତଃପୁରରେ ରାଣୀ କଣ ଜାଣନ୍ତି ନାହିଁ ?

ହସି ଉଠିଲା ରାଧା । ତା'ପରେ ସେହି ସନ୍ଧ୍ୟାରେ ବେଶ ବଦଳାଇ ଅନ୍ତଃପୁରକୁ ଗଲା । ରାଣୀ ବସିଛନ୍ତି– ଘରିଧାରରେ ଦାସଦାସୀ । ଜଣେ ଦାସୀ କହିଲା– ରାଣୀମା ଶୁଣିଛନ୍ତି ଜଣେ ନର୍ତ୍ତକୀ ଆସିଛି– ଆଉ...

ରାଣୀ ହସି ଉଠିଲେ– ସେ କଥା କଣ ଭାବିବାର କଥା । ଛାଡ଼, ସମସ୍ତଙ୍କର ସଉକ ଅଛି । ସେମାନେ ରାଜା– ସଉକରେ ହଜାର ହଜାର ବନିତାଙ୍କ ସହିତ ମିଶିଲେ ମୋର କ୍ଷତି କଣ ? ମୁଁ ତ ସେହି ରାଣୀ ।

ଫେର୍ ଭାବନାରେ ଆହୁରି ଜଡ଼ ହୋଇ ପଡ଼ିଲା ଶିଖା । ଆହୁରି କାନ୍ଦି ଉଠିଲା ସେ । ରାତିରେ ଖାଇପାରିନି ସେ । ତେବେ କ'ଣ ? କିଛି ଭାବିପାରୁନି । ସେ ବୁଢ଼ା ଓସ୍ତାଦ୍ ବାପର ଗଳାଧରି କାନ୍ଦି ପକାଇଲା । ତେବେ, ତେବେ ମୁଁ– ଓସ୍ତାଦ୍ ବୁଝିଲା– ଆରେ ବେଟିଆ ତୋର ଆପଣା କାମ ତୁ କରିଯାଆ– ଯା ।

ଫେର୍ ଭାବିବସିଲା ସେ ନିଜ ମନରେ । ଉଦ୍ୟାନ ମଣ୍ଡପରେ ବସିଛି ସେ ଗୁମାନ କରି । ରାଜା ଆସିଲେ । କେତେ ରାଣ ଅଭିମାନ ପରେ କହିଲା ଶିଖା–

ବାହୁରେ ଗଳା ଛନ୍ଦି ଅଧର ମିଳାଇ କହିଲା– ତୁମେ କଣ ଭଲପାଅ ? ଉଚ୍ଛୃଙ୍ଖଳ ହୋଇ ଉଠିଲା ତାର କଣ୍ଠ– ତେବେ ମୋତେ ବାହା ହୋଇଯାଅ ।

ଏ କି ପାଗଳାମି ! ଏଗୁଡ଼ାକ କି କଥା । ତମର ଯୌବନ ଅଛି । ମୋର ଯୌବନ ଅଛି । ଦୁହେଁ ଚାଲିବା । ଛି ଏକଥାଗୁଡ଼ାକ ମନରୁ ପୋଛି ପକାଅ– ମନରୁ ପୋଛି ପକାଅ ।

ରାଜା ଫେରିଗଲେ । ରାଧା ମନରେ ଅତୀତର ଧୂଆଁଳିଆ ସ୍ମୃତି ଜାଗି ଉଠିଲା । ଏହିପରି ଗୋଟିଏ ନାରୀ ଆସିଥିଲା । ବଳାତ୍କାର କରି ଗୋଟିଏ ବ୍ରାହ୍ମଣ ବିଧବାକୁ ଦେଇଥିଲେ ପରଶ । ସେ ଦାବି କଲା ଦିନେ– ମୋର... ସନ୍ତାନ । ରାଜା– ଆଦେଶ କଲେ ଔଷଧ ଖାଇ ସେଇ ପେଟରୁ ଫେରାଇ ଦିଅ । ପାଗଳୀଟା କିଛି ବୁଝିଲା ନାହିଁ । ଏକ ନିଶାର୍ଦ୍ଧରେ ତାକୁ ନେଇ କେଉଁ ଅପନ୍ତରା ଗଳିରେ ଛାଡ଼ି ଦିଆଗଲା । ସେ ସେଠାରେ ରହିଲା । ଆଉ ତା'ର କୌଣସି ଖବର ନାହିଁ– କୁଆଡ଼େ ଗଲା ସେ । ରାଧା କିନ୍ତୁ ଶିଖାକୁ ଦେଖୁଛି ଠିକ୍ ସେପରି । ସେଇ ଆଖି, ନାକ, କାନ । ଆଜିର ଷୋହଳ ବର୍ଷର ଅତୀତ ଠିଆ ହୋଇଛି ।

ସେହିପରି ଗୋଟିଏ ଦୁର୍ବଳା ନାରୀ– ଚିତ୍କାର କରିଛି । ରାଧାର ପାଦତଳେ ପଡ଼ିଲା ଶିଖା । ପାଦ ଦୁଇ ଧରି କଇଁ କଇଁ କାନ୍ଦି ଉଠିଲା । ଶିଖା କଣ ତେବେ ଉପର ଅନଳ ଶିଖା ନେଇ ଆସିଛି । ଯେବେ ସେ ଲିଭିଯିବ– ଅବହେଳିତ ପୋଷାକ ପରି ପଡ଼ି ରହିବ ।

ମନେହୁଏ କିଏ ତାର ମାଆ, କିଏ ଏହି ରମଜାନ, କିଏ ଏ ପୃଥିବୀ ? ଅବୋଧ ଶିଶୁ ଚିତ୍କାର କରି ଉଠୁଛି । କିଏ ମୁଁ ? ପାଗଳୀ ହୋଇ ଉଠିଲା ଶିଖା । ଅବ୍ୟକ୍ତ ବେଦନାରେ ଗୁମୁରି ଉଠିଲା ତାର ବୁକୁର ସ୍ପନ୍ଦନ ।

ସେଦିନର ଜ୍ୟୋତ୍ସ୍ନା– ମଳୟ, ଗୋଲାପ, ବନବିଥି ସବୁ ଯେପରି ଅହେତୁକ– ସବୁ ଯେପରି ତୁଚ୍ଛ– ସହସା ହୀନ– ନା-ନା କିଛି ନାହିଁ ତାର ଏ ପୃଥିବୀରେ । ଆହୁରି ଜୋର୍‌ରେ କାନ୍ଦି ଉଠିଲା ସେ ।

ରାଧା ତାକୁ ବୁକୁରେ ଜାକି ଆଦିମ ମନୁଷ୍ୟର ମାତୃତ୍ୱ ସ୍ନେହରେ ସ୍ତିମିତ କରୁଥିଲା । ଯେପରି ସେ ନକହି କହି ଦେଉଥିଲା– ଏଇ ଘରେ ତୋର ମାଆ ବଳି ପଡ଼ିଥିଲା– ଏଇ ଘରେ ତୋର ମାଆ ପାଖରେ ତାରି କାର୍ଯ୍ୟର ଫୁଲ ବଳି ପଡ଼ିଛି । ସଞ୍ଜ ନଇଁ ଆସିଲା ।

ଜ୍ୟୋତ୍ସ୍ନାର ତରଙ୍ଗ । ପବନର ବେଗ । ସ୍ମୃତିର ମଶାଣି । ଅତୀତର ଦାଗ । ମଣିଷ ଜୀବନର ବିରହ ଶକ୍ତି ଉପରେ– ଚାବୁକ ଲଗାଇ ଚାଲିଛି ଅର୍ଥର ବିଷମେ–

ସେଇ ରାତିରେ ରଙ୍ଗମହଲରେ ଶିଖାର ଗତାନୁଗତିକ ସେଇ ଚଞ୍ଚଳ ପଦ ନୃତ୍ୟର ଆବେଗ ଶୁଣାଗଲା–

ପ୍ରିୟ ହେ ପ୍ରିୟ ତମେ ମୋର
ଯୁଗ ଯୁଗର ପ୍ରିୟ ।

ପଦଧ୍ୱନି– ନିକ୍ୱଣ ଚଞ୍ଚଳ କରି ଦେଉଥିଲା । ଆଉ ରାଧା ନିଦ୍ରାରେ କୁଣ୍ଡଳୀ ରଚୁଥିଲା ।



# କଳଙ୍କ

ନିମନ୍ତ୍ରଣ ପତ୍ରଟିରେ କିଛି ବିଶେଷତ୍ୱ ନ ଥିଲା । କେବଳ ଗୋଟିଏ ସଭାରେ ମୋତେ ବକ୍ତୃତା ଦେବାକୁ ହେବ । ସମାଜସଂସ୍କାର ସମ୍ବନ୍ଧରେ ମୋର ଭାଷଣ ହେବ ।

ଯେଉଁ କଥାର ଜୀବନ ସହିତ ମୋଟେ ମେଳ ନାହିଁ ସେଇସବୁ କଥାର ଅବତାରଣା କରିବା ମୋର ବିଷୟବସ୍ତୁ ହେବା ସ୍ୱାଭାବିକ । ଯେଉଁ ଭଦ୍ରବ୍ୟକ୍ତି ମୋତେ ସମାଜର ସଂସ୍କାରକ ଭାବରେ ନିମନ୍ତ୍ରଣ କରିଯାଇଥିଲେ, କିଛି ପୂର୍ବାଭାସ ଦେଇଥିଲେ । କିଛିଦିନ ତଳେ ସେଇ ଗାଁରେ ଗୋଟିଏ ବିବାହ ଗଣ୍ଡଗୋଳ ହୋଇ ପୁଅଟି ଫେରିଯାଇଥିଲା । କାରଣଟା ଯେ ଯୌତୁକ ସେତିକି ନୁହଁ, ବର ଅଦେଖା କନିଆଁ ବିବାହ କରିବେନି ବୋଲି ସ୍ଥିର କରିସାରିଥିଲେ । ପରେ ଅବଶ୍ୟ ସେ ବାଲେଶ୍ୱରରେ ଏକ କଣ୍ଟ୍ରାକ୍ଟ ବିବାହ କରିଥିଲେ । ବାସ୍ତବିକ ଦେଖିଲେ ଭଦ୍ରବ୍ୟକ୍ତି ବୋଧହୁଏ ଜାଣନ୍ତି ନାହିଁ ଯେ ମୋ ଜୀବନରେ ଏହିପରି ଘଟଣା ଘଟିଯାଇଛି ।

ମୋର ନିର୍ବାଚନରେ ଜୟ କରିବାର ଲାଳସା ନଥିଲା, ତା ଛଡ଼ା ମୁଁ ଯେ ସଚ୍ଚା ଦେଶପ୍ରେମିକ ବୋଲି ତାଙ୍କର ପ୍ରତ୍ୟୟ ହୋଇଛି ଏହାକୁ ଦୃଢ଼ୀଭୂତ କରିବାର ଥିଲା ମୋର ବୟସ ।

ଚେଷ୍ଟାକରି ମୁଁ ଡେରିରେ ସଭାରେ ପହୁଞ୍ଚିଲି । ସଭାକାର୍ଯ୍ୟ ଆରମ୍ଭ ହୋଇସାରିଥିଲା । ନାଟକୀୟ ଠାଣିରେ ଫୁଲହାରଗୁଡ଼ିକ ଗ୍ରହଣ କରିସାରିଲା ପରେ ମୋର ଅଭିଭାଷଣ ଆରମ୍ଭ କରିଥିଲି । ମୋର ଭାଷଣରେ ବେଶ୍ ଓଜନଦାର ଶବ୍ଦ ଲଗାଇ କହିଥିଲି ମଣିଷ ମଣିଷକୁ ଚିହ୍ନିବାକୁ ଶିକ୍ଷା କରୁ । ବହୁତ ତାଳି ପଡ଼ିଲା । ଆତ୍ମକୃତିତ୍ୱରେ ମୁଁ ଯେପରି ଫାଟି ପଡୁଥିଲି ।

ଜଣେ ଭଦ୍ରମହିଳା ଉପସ୍ଥିତ ଜନତା ଭିତରୁ ଆସି ଭାବନା ବ୍ୟକ୍ତ କଲେ । ସେ କହିଲେ, ବାସ୍ତବିକ ତାଙ୍କର ଧାରଣା ହେଲା ଯେ ଲେଖକ, ନାଟ୍ୟକାରମାନେ ଯାହା ଲେଖନ୍ତି ତାହା କହନ୍ତି । ପ୍ରଶଂସାରେ ମୁଁ ପୋତି ହୋଇ ପଡ଼ିଲି । ସେ କହିଲେ ଜୀବନରେ ଆଦର୍ଶକୁ ସେମାନେ ଯେପରି ପ୍ରତିଫଳନ କରିପାରନ୍ତି, ସେମାନେ ଦିଗ ନିର୍ଦ୍ଦେଶକ ।

ସଂଘର ସମ୍ପାଦିକା ଠିଆହେଲେ । ପେଟ୍ରୋମାକ୍ସ ଆଲୋକରେ ମୁଁ ଦେଖି ସଂକୁଚିତ ହୋଇଗଲି । ଅତି ପରିଚିତା ମୋର ମନେହେଲେ, କ୍ରମଶଃ ଅତୀତର ସେଇ କୁହେଳି ଘେରା ସ୍ୱପ୍ନ ମୋତେ ଅଭିଭୂତ କରିବାକୁ ଲାଗିଲା । ପ୍ରଥମ ଗର୍ଭିଣୀ ନାରୀର ଆତ୍ମକୃତିତ୍ୱର ଗୋପନ ଅହଂକାର ପରି ମୋର ଚେତନା ତରଳି ଯାଉଛି । ମୁଁ ଭାବିଲି ଏଥର ମଲି । ମୋର ଘର୍ମାକ୍ତ କପାଳ ଦେଖି ପାଖରେ ପ୍ରୌଢ଼ ବନ୍ଧୁ କହିଲେ ଆପଣଙ୍କର କ୍ଳାନ୍ତି ବଢ଼ିଯାଇଛି । ସେ କଣ ବୁଝିପାରିଲେ ମୋର ବୟସ ହଠାତ୍ କିପରି ଏତେ ବଢ଼ିଗଲା । ମୁଁ ଗୋପନ ମନରେ ସନ୍ଦିଗ୍ଧ ହୃଦୟରେ ବିପଦ ଗଣୁଥିଲି ।

ସମ୍ପାଦିକା ଭାଷଣ ଦେଲେ । ମୋର ସେ ପ୍ରଶଂସା କରିଛନ୍ତି । ମୋର ଲେଖା ଭିତରେ ମୁଁ ସଂସ୍କାରକୁ ଶୀର୍ଷ ସ୍ଥାନ ଦେଇଛି । ଆଉ ତାହାରି ଉପରେ ମୋତେ ନିମନ୍ତ୍ରଣ କରା ହୋଇଛି । ମୋର ସ୍ଥାନ ଓ ପରିସ୍ଥିତି ବୁଝିଲି ।

ସଭା ପରେ ରାତ୍ରି ଅନେକ ହୋଇଯାଇଥିଲା । ଗାଁରେ ନାଚଗୀତର ଏକ ଆସରରେ ମୁଁ ବିଶିଷ୍ଟ ଅତିଥି ଭାବରେ ଯୋଗ ଦେଲି । ପ୍ରୌଢ଼ ବନ୍ଧୁ ଦେଖାଇ ଦେଇଥିଲେ ଏଇ ପ୍ରଭା ଲାଗି ଆମରି ଗାଁ ହସି ଉଠିଛି । ସେ ସଂଘର ସମ୍ପାଦିକା କେବଳ ନୁହେଁ, ସେ ଏ ଅଞ୍ଚଳରେ ଜଣେ ସମାଜସେବିକା ଓ ସରପଞ୍ଚ । ନର୍ସିଂ ଜାଣନ୍ତି । ସ୍କୁଲ କରି ଶିକ୍ଷା ପ୍ରସାର ଚେଷ୍ଟା କରୁଛନ୍ତି । ଏହିସବୁ...

ନୃତ୍ୟ ଗୀତ ପରେ ମୋର ଭୋଜନ ସରିଯାଇଛି । ଏବେ ନିରୋଳା ପଡ଼ିଯାଇଛି । ଉତ୍ସବର ଶେଷ ଧୂପଟି ଜଳିଯାଇଛି । ଏବେବି ସେଇ ଗୀତଗୁଡ଼ିକର ପଦେ ଦି'ପଦ ସୁର ଧରି ପିଲାଏ ଚାଲିଛନ୍ତି ଗୋହିରିରେ ।

ମୋତେ ସକାଳୁ ଫେରିଯିବାକୁ ହେବ ମୋର କର୍ମକ୍ଷେତ୍ରକୁ, ଯେଉଁଠି ଭାଷା ଏବଂ ଶବ୍ଦର କସରତ୍ କରିବାକୁ ପଡ଼େ । ରାଶି ରାଶି ସିଗାରେଟ୍ ଧୂଆଁ ଭିତରେ ନିକୋଟିନ୍‌ର ଅପକାରିତା ସଂପର୍କରେ ପୃଥିବୀ ବକ୍ଷରେ ଥିବା କୋଟି କୋଟି ପ୍ରାଣୀକୁ ଚେତାଇବାକୁ ଚାହୁଁ । ଦୂରର ଆଲୋକ ଭିତରେ ଆନନ୍ଦ ସଂଚରି ନିଜ ଅନ୍ତରର ପ୍ରଦୀପ ଶିଖାକୁ ଲିଭାଇ ଦେଉଁ । କଥା ଓ କାମ ଭିତରେ ଆକାଶପାତାଳ ପ୍ରଭେଦ । କାହାରି ମେଳ ନାହିଁ । କାହାରି ସାଙ୍ଗରେ କାହାର ଖାପ ଖାଏନା ।

ବଞ୍ଚିବାର ସାଧନା ଭିତରେ ମଣିଷ ଜୟ ଜୟ କରିବାକୁ ଚାହେଁ ।

ବହୁ ଅତୀତର କଥା । ମୁଁ ଜଣଙ୍କ ଘରକୁ ଯାଇଥିଲି । ସେ ଘରର ଝିଅ ପ୍ରଭାବତୀ ଦିନେ ଆସି କହିଲା– ତମକୁ ମୋତେ ଖୁବ୍ ଭଲ ଲାଗୁଛି । ତମେ ମୋତେ ଉତ୍ସାହ ଦିଅ । ମୁଁ ନିରୁତ୍ସାହ କରିନାହିଁ । ପ୍ରେମ ଦେଇଛି । ରାଶି ରାଶି କବିତା ଲେଖିଛି । ଗଳ୍ପ ଲେଖିଛି । ପୁସ୍ତକ ଆକାରରେ ବହି ଲେଖି ଦାନ ଦେଇଛି । ପ୍ରଭାବତୀର ପିତା ହଠାତ୍ ମରିଗଲେ । ପ୍ରଭାବତୀ ବି.ଏ. ପଢ଼ା ଛାଡ଼ି ଗାଁକୁ ଆସିଲେ ।

ତା'ପରେ ସେହି ପ୍ରୌଢ଼ବ୍ୟକ୍ତି କହନ୍ତି, ବିବାହ ମଣ୍ଡପରୁ ବର ଆସି ଫେରିଗଲା । ଝିଅଟିର ମନ ଦୁଃଖ ହେଲା । ସେ ବିବାହ କଲା ନାହିଁ । ସମାଜସଂସ୍କାର କରିବ ।

ମୁଁ ଆଜି ଆସିଛି ସଂସ୍କାରକ ହୋଇ । ସେଇ ରାତ୍ରିରେ ସେ ଆସିଲେ । ନିର୍ଜୀବ ରାତ୍ରିରେ, ଯେତେବେଳେ ଉତ୍ସବ ମଣ୍ଡପ ଶୂନ୍ୟ ହୋଇଯାଇଛି ।

–'ଆସନ୍ତୁ ଖାଇବେ ।'

–'ପ୍ରଭା, ଚିହ୍ନି ପାରୁଚ ? ମୋତେ କ୍ଷମା କର ।'

–'କ୍ଷମା କରିବାର ପ୍ରଶ୍ନ ଉଠୁନାହିଁ । ଆଜି ଆପଣଙ୍କୁ ନିମନ୍ତ୍ରଣ କରିଛି କାହିଁକି ଜାଣନ୍ତି, ମୋର କୃତିତ୍ୱ ଦେଖାଇବା ପାଇଁ ।'

ଯେପରି ସବୁକଥା ଅକୁହା ରହିଗଲା । ରାତ୍ରି ଗତ ହୋଇଯାଉଛି । ମୁଁ କିନ୍ତୁ ଶାନ୍ତିରେ ନିଶ୍ୱାସ ନେଇପାରୁନାହିଁ । ଯେପରି ମୋର ତଣ୍ଟି ଚିପି ଧରୁଛି କିଏ । ଏମିତି ଏଇ ପୁରକୁ ମୁଁ ଦିନେ ବରବେଶ ସାଜି ଆସିଥିଲି । ନିର୍ଲଜ ହୋଇ ଚାଲିଯାଇଥିଲି । ଉଦ୍‌ବେଗ ଶଙ୍କିତ ହୋଇଗଲି । ସେଇ ରାତ୍ରିରେ ଖଣ୍ଡିଏ ଚିଠି ଲେଖି ମୋର ଯାତ୍ରା ଆରମ୍ଭ କଲି– 'ମୋତେ ପ୍ରଭା କ୍ଷମା କରିବ ମୋର ବକ୍ତୃତା ପାଇଁ ମୁଁ ଦୁଃଖିତ, ଲଜ୍ଜିତ । କଥା ଓ କାମ ସହିତ ମେଳ ନ ରଖି ଜୀବନକୁ ଦୁର୍ବଳ କରିପାରିବିନି । ତମେ କ୍ଷମା କରିବ ।'



# ପାପ ଓ ପ୍ରାୟଶ୍ଚିତ୍ତ

ମନମୋହନ ଯେବେ ବ୍ଳକ୍ ଡେଭେଲପ୍‌ମେଣ୍ଟ ଅଫିସର ହୋଇ ଆସିଲା ସେତେବେଳେ ମାଳପୁର ବ୍ଳକ୍ ଅଫିସ୍‌ର ଅବସ୍ଥା ଭଲ ନଥିଲା । ଡେଭେଲପ୍‌ମେଣ୍ଟ କମିଶନର, ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଆସେମ୍ବ୍ଲିର କେତେକ ସଭ୍ୟ ଓ ପିଇସୀପୁଅ ଭାଇର ଶ୍ୱଶୁରର ଭାଇ ସମ୍ବନ୍ଧୀୟ ମନ୍ତ୍ରୀ ମହାଶୟମାନେ କହିଲେ– ଦେଖ, ତମକୁ ଏଇଟା ଗୋଟାଏ ବଡ଼ ଋନ୍ସ ଦିଆଗଲା । ଏହା ତମର ପରୀକ୍ଷା । ବର୍ଷକ ଯଦି ସୁରୁଖୁରୁରେ ଚଳାଅ ଏବଂ ତମର ପୂର୍ବତନ ବି.ଡି.ଓ.ଙ୍କର ମଦ୍ୟପାନ ସେ ଅଞ୍ଚଳର ସ୍ତ୍ରୀମାନଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି ଏବଂ ବ୍ଳକ୍‌ଗାଡ଼ିରେ ଶିକାର ପ୍ରଭୃତି ବନ୍ଦ କରି ଉତ୍ତମ ଡେଭେଲପ୍‌ମେଣ୍ଟ କାର୍ଯ୍ୟ କର ତେବେ ତମେ ଡେପୁଟି କଲେକ୍‌ଟର ହୋଇଯାଇଛ ନିଃସନ୍ଦେହ ।

ମନମୋହନର ଅନୁଭୂତି ଥିଲା, ସେ ମାଟ୍ରିକ୍ ପଢ଼ି କିରାଣିଠାରୁ ନନ୍‌ଗେଜେଟେଡ୍ ଏବଂ ପରେ ଗେଜେଟେଡ୍ କିପରି ହେଲା ସେ ଜାଣିଛି । ମଦ୍ୟପାନ ଏବଂ ନାରୀଧର୍ଷଣ ଓ ଶିକାର କରିବାକୁ ନ ଦେଇଥିଲେ କେହି ଜଣେ ଉଚ୍ଚପଦସ୍ଥ ଅଫିସର ତା ନାମ ଯେ ସୁପାରିଶ କରିନଥାନ୍ତେ ସେଥିରେ ସେ ନିଃସନ୍ଦେହ । କେବଳ ସେତିକି ନୁହେଁ, ଆଜ୍ଞାବହ ସାଜି ସମୟାନୁସାରେ ବିକାଶମୂଳକ ପାଣ୍ଠିରୁ ତା ନିକଟରୁ ଧାର ନେଇ ଧାର ପରିଶୋଧ ନକରୁଥିବା ବହୁ ଅଫିସରଙ୍କଠାରୁ ବର୍ଷକୁ ଦୁଇଟା ଇନ୍‌କ୍ରିମେଣ୍ଟ ତ୍ର ମଧ କରୁଛି । ଏଗୁଡ଼ାକ ତା ଜୀବନର ପାହାଚ ! ମନମୋହନ ଜାଣିଛି ନୋଟ୍‌ସିଟ୍ ତାକୁ ଲେଖି ନଆସୁ, ଜଜ୍‌ମେଣ୍ଟ ଲେଖି ନଜାଣୁ, ଜମି ମାପ କରି ନଜାଣୁ, ହାତେ ବି.ଏ., ଏମ୍.ଏ. ଲମ୍ବା ଡିଗ୍ରୀ ନଥାଉ, କିନ୍ତୁ ସେ ଏଫିସିଏଣ୍ଟ ବୋଲି ନାମ ପାଇଛି, ପାଇବ । ଗଣ୍ଡା ଗଣ୍ଡା ବିଏ, ଏମେ ବସୁଥିବେ କିନ୍ତୁ ସବ୍‌ଡେପୁଟିରେ ହିଁ ରହିବେ । ମାଟ୍ରିକ ପାସ୍ କରା ମନମୋହନ ଡିପୋଟି ହେବ ।

ମନମୋହନକୁ କିନ୍ତୁ ଏ ଋକିରିରେ ଟିକିଏ ଅଲଗା ପରି ଲାଗୁଛି । ସେ ଆଗରୁ ସମସ୍ତଙ୍କୁ ଖୋସାମତ କରୁଥିଲା । ଏବେ ତାକୁ ଖୋସାମତ କରିବାକୁ ପିଅନ, ଚପରାସୀ, ଏଗ୍ରିକଲ୍‌ଚର ସୁପରଭାଇଜର, ଏସ୍‌ଇଓ, ଡାକ୍ତର, ଏଡ଼ିଓ ଅନେକ ଅନେକ ଅଛନ୍ତି । ସେ ଗଭୀର ଭାବରେ ଚିନ୍ତା କରିଛି– ଏଇଟା ବଡ଼ କଦର୍ଯ୍ୟ କଥା । ଖୋସାମତି

ଏକ ହୀନ ପନ୍ଥା । ସେ ଘରହେଁନା ଅଥଚ ଏସ୍‌ଡ଼ିଓ, ଏଡ଼ିଏମ୍, ଡିଏମ୍, ପଲ୍‌ଟିକେଲ୍ ସର୍ଭିସେସ୍ କର୍ମକର୍ତ୍ତା ପାଇଁ ଟିଣ ଟିଣ ଜଡ଼ାତେଲ ଖର୍ଚ୍ଚ କରିବା ପାଇଁ ପ୍ରସ୍ତୁତ ।

ସବୁଠାରୁ ତାର ଭଲଗୁଣ ଥିଲା ସେ ସ୍ତ୍ରୀପ୍ରିୟ ନୁହେଁ । ଜୀବନରେ ସେ ପ୍ରେମ କରିନାହିଁ । ପ୍ରେମ କରିଥିଲା ଚକିରିକୁ । କାରଣ ଥିଲା ଯଥେଷ୍ଟ । ତା'ର ଜୀବନରେ ବହୁ ଆଶା ଯେତେବେଳେ ମାଟିରେ ମିଶିଲା ଏବଂ ଗ୍ରାଜୁଏଟ୍‌ଟାଏ ମଧ୍ୟ ହୋଇପାରିଲା ନାହିଁ ସେତେବେଳେ ସେ କିରାଣିରୁ ଆରମ୍ଭ କଲା । ଘରିଆଡ଼େ ଦେଖିଲା ବହୁ ଗ୍ରାଜୁଏଟ୍ ତାରି ପରି କିରାଣି । ତେଣୁ ସେ ବି.ଏ. ପଢ଼ିବାକୁ ଇଚ୍ଛା ନ କରି ଉନ୍ନତ ଧରଣର ଖୋସାମତି ଶିକ୍ଷା କଲା ।

ମନମୋହନ ଆଗରେ ଯେଉଁଦିନ ସୁବେଶମୋହିନୀ ଦିଲ୍ଲୀ ଫେରନ୍ତା ହେଲଥି ଭିଜିଟର ବୀଣା ଠିଆହୋଇ ଛୋଟ ନମସ୍କାର ଜଣାଇଲା, ମନମୋହନ ଦେହ ଭିତରେ ଯେପରି ଗୋଟାଏ ଅଜସ୍ର ଶବ୍ଦ କରି ବୋମା ବିସ୍ଫୋରଣ ହେଲା । କିନ୍ତୁ ମନମୋହନର ଦୃଷ୍ଟି ସ୍ଥିର ଓ ଉନ୍ନତ । ସେ ସଙ୍କୁଚିତ ହେଲା । ସେଦିନ ରାତି ବାରଟା ପର୍ଯ୍ୟନ୍ତ ଫାଇଲ୍ ଦେଖିଲା ।

ତା'ପରେ ମନମୋହନର ଗମ୍ଭୀରତା ବୃଦ୍ଧି ପାଇଲା । ସେ ଥରେ ଦୁଇଥର ବୀଣାଆଡ଼କୁ ଲୋଲୋଚାହାଣି ହାଣିବାକୁ ଇଚ୍ଛା କରି ମଧ୍ୟ ପରାସ୍ତ ହୋଇଛି । ତାର ଦୁର୍ବଳତା ତାକୁ ଯେପରି ସଜାଗ କରୁଛି ।

ଘର ନଥିଲା । ତେଣୁ ବୀଣା ନିଜେ ପ୍ରସ୍ତାବ ଦେଲା ଯେ ମନମୋହନର ପାଖ ଘରଟିରେ ସେ ରହିବ । ମନମୋହନ କିଛି ଆପତ୍ତି କରିନଥିଲା । ଏପରିକି ଏ ପ୍ରସ୍ତାବରେ କେହି ଷ୍ଟାଫ୍ ବିରକ୍ତି କି ବୈରତା ପ୍ରକାଶ କରିନାହାନ୍ତି । ସାମାଜିକ ଶିକ୍ଷା ସଂଗଠକ ପ୍ରଣବ ଏବଂ ଡାକ୍ତର ବିଧୁଭୂଷଣ ଏ ସଂପର୍କରେ ଚର୍ଚ୍ଚା କରୁଥିବାର ଜାଣି ମନମୋହନ ସିଧାସିଧି ସେମାନଙ୍କୁ ଭଡ଼ାଘରୁ ଡାକିଆଣି ଗୋଟିଏ ରୁମ୍‌ରେ ରଖି ସେମାନଙ୍କର ତାରୁଣ୍ୟତା ଏବଂ ଚପଳତା ଉପରେ ଆଘାତ ଦେଲା । ସମସ୍ତଙ୍କ ଆଖିରେ ମନମୋହନ ଶ୍ରେଷ୍ଠ ପୁରୁଷ ବିବେଚିତ ହୋଇଗଲା ।

କିନ୍ତୁ ମନମୋହନର ଅନ୍ତରତଳ ବିକ୍ଷୁବ୍ଧ ହୋଇ ଉଠିଥିଲା । ନଦୀର ବନ୍ୟାପରି ତାର ମନର ଉତ୍ସାହ ବୀଣା ନିକଟକୁ ଧାଇଁଯାଉଥିଲା, କିନ୍ତୁ ସେ ସତର୍କ ଥିଲା । ସେ ଡିପୋଟି ହେବ । ସେ ପ୍ରଶ୍ନଠାରୁ ଆଉ ଗୋଟାଏ ଜିନିଷ ପ୍ରତି ତା'ର

ଭୟଙ୍କର ଦୁର୍ବଳତା ଥିଲା, ସେଇଟା ତାର ଖୋସାମତି । ତାର ଶିକ୍ଷା ଦୀକ୍ଷା ଯାହା ହେଉନା କାହିଁକି ସେ ଡରୁଥିଲା, ବୀଣା ଯଦି ଜାଣିପାରେ ତାର ଏତେବଡ଼ ଚାକିରି ମୂଳରେ କାମ କରିଛି 'ମନଜାଣି କାମ କରିବ' । ଏଇଥିରେ ସେ ସ୍ପଷ୍ଟ ହେବାକୁ ଚାହେଁ ଯେ, ଥରକୁ ଥର କଂଗ୍ରେସ, ଗଣତନ୍ତ୍ର, କମ୍ୟୁନିଷ୍ଟ, ସୋସାଲିଷ୍ଟ ଲଢ଼ାଇ ଲାଗିବେ । ଯେ କେହି ଆସନ୍ତୁ ଏ ଶାସନକଳକୁ କେହି ବଦଳାଇ ଦେଇପାରିବେ ନାହିଁ । ତା'ଛଡ଼ା ବିଭିନ୍ନ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ବିଭିନ୍ନ ଏସ୍‌ଡ଼ିଓଙ୍କ ବଦଳିରେ ବିଭିନ୍ନ ଫେସନ୍‌ର ଫାଇଲ ଦଉଡ଼ ହୁଏ, କାମ ହୁଏ ନାହିଁ, ଏଇଟା ସତକଥା । ହଜାରେ ଦଳଗଢ଼ା ହେଉ, ହଜାରେ ସୋସାଲିଷ୍ଟ କମ୍ୟୁନିଷ୍ଟ ଆସନ୍ତୁ କିଛି ବଦଳିଯିବ ନାହିଁ କିନ୍ତୁ ଗୋଟାଏ ଜିଲ୍ଲା ହାକିମର ଟେମ୍ପରାମେଣ୍ଟରେ ସେ ଜିଲ୍ଲାର ରଥଚକ ସିଧା ନଯାଇ ଓଲଟି ବୁଲିପାରେ ।

ଚାକିରି କରିବାକୁ ହେଲେ ଖୋସାମତି କରିବାକୁ ହେବ । ତାଙ୍କର ଦରକାର ଅନୁଯାୟୀ ଜିନିଷ ନେଇ ତାଙ୍କରି ଆଗରେ ତିନୋଟି ଜିନିଷ ରଖିବ– ମଦ, ନାରୀ ଓ ଟଙ୍କା ।

ଏଥିରୁ ବଞ୍ଚିଯିବା କଣ କାହାର ଉପାୟ ଅଛି ? ବଡ଼ଲୋକି ଓ ଅଭାବ ଦୁଇଟା ଦେଖାଇବାରେ ।

ବୀଣା ସୁନ୍ଦରୀ । ବହୁ ସମୟରେ ଅଲକ୍ଷ୍ୟରେ ମନମୋହନ ବୀଣା ଆଡ଼କୁ ଅନାଇ ବିହ୍ୱଳ ହୋଇଯାଏ । ଠିକ୍ ପରମୁହୂର୍ତ୍ତରେ ସେ ନିଜକୁ ଠିକ୍ କରିପକାଏ– ତାକୁ ଡିପୋଟି ହେବାକୁ ହେବ– ବଡ଼ ହେବ । ଖୁବ୍ ବଡ଼ । ସେ ତାର ଅତୀତ ଜୀବନରେ ବହୁ ନର୍ସ, ମିସ୍‌ଟ୍ରେସ୍ ଏବଂ ଅନ୍ୟାନ୍ୟଙ୍କୁ ରୁଣ୍ଡାଇ ରାତ୍ରିଯାପନ ପାଇଁ ଉଚ୍ଚ କର୍ମକର୍ତ୍ତାମାନଙ୍କୁ ଯୋଗାଇ ଦେଇଛି । ସେ ନିର୍ଲଜ୍ଜ ଭାବରେ କରିଯାଇଛି । ସେ ଦେଖୁଛି ତାରି ପାଖ କର୍ମଚାରୀ ଗ୍ରାଜୁଏଟ୍ ଏମେ, ବିଏ. ବିଏଲ୍, ତାଙ୍କୁ ଟପିବାକୁ ହେବ । ଟପିଛି ।

ଆଜି ବୀଣାକୁ ସେ ଯେତେ ଦେଖୁଛି ନିଜକୁ ଅସହାୟ ମଣୁଛି । ଅଫିସ୍ ଘରେ ଅନ୍ୟମନସ୍କ ହୋଇ ଚିନ୍ତା କରୁଛି । ଏସ୍‌ଇଓ ବା ଡାକ୍ତର ଚେଷ୍ଟା କରି ଯେପରି ତା ହାତରୁ ବୀଣାକୁ ନ ନିଅନ୍ତି ସେ ନଜର ଦେଉଛି । ପାଖ ରୁମ୍‌ରେ ଥଟ୍ଟାତାମସା ତା ଦେହ ଓ ମନକୁ ଅସ୍ଥିର କରିଦେଉଛି । ସେ ସେମାନଙ୍କୁ ଡାକି କାମ ବତଉଛି । ବୀଣାର ଗୁରୁଜନ ବୋଲି ମନମୋହନର ଖ୍ୟାତି ବଢ଼ିଯାଉଛି । ମାଳପୁର ସଂପ୍ରସାରଣ ବ୍ଲକ୍‌ର ସାଧାରଣ ଲୋକ ମନ୍ତବ୍ୟ କରୁଛନ୍ତି ଏତେ ସଚ୍ଚୋଟ, ଏତେ ସାଧୁ ଚରିତ୍ରବାନ୍ ବି.ଡ଼ି.ଓ. ପାଇବା ବାସ୍ତବିକ ଭାଗ୍ୟର କଥା ।

ଖରାଦିନ । ଅମାବାସ୍ୟା ରାତ୍ରି । ବିରାଟ ନୀଳ ଆକାଶର ଛାତ ତଳେ ଶୋଇଛି ମନମୋହନ । ପିଣ୍ଡାରେ ବୀଣା । ଏସ୍‌ଇଓ ଓ ଡାକ୍ତର ଏଯାଏଁ ଗସ୍ତରୁ ଫେରିନାହାନ୍ତି ।

ମନମୋହନ ଭାବୁଛି । ବୀଣା ତାର କେତେ ପାଖରେ । କେତେ ପାଖରେ ସେ । ଏଇପରି ରାତ୍ରି । ଏପରି ରାତ୍ରି କଣ ତା ଜୀବନରେ ଆଉ ଆସିବ । ଦେହ ଭିତରେ କେତେଦିନ ଆଉ ଦଂଶନ ଅନୁଭବ କରିବ । ସେ ପାଖ କଡ଼ାଇ ଶୋଇଲା । ଖୁବ୍ ଧୀରେ ଧୀରେ ନିଶ୍ୱାସ ପଡୁଛି । ବୀଣା ତେବେ ଶୋଇଯାଇଛି ।

ଏଇ ବୀଣା ଯଦି ପାଖରେ ବସନ୍ତା । ଆନନ୍ଦରେ କେତେ କଥା କୁହନ୍ତା । ସେ ବାହୁ ଜଡ଼ାଇ ଦୁଇଟି ଦିହ ଏକ କରିଦିଅନ୍ତା ।

ମନମୋହନ ଶୋଇବାକୁ ଚେଷ୍ଟା କଲା । ଆଖିମାଡ଼ି– କାନ ବନ୍ଦକରି ଶୋଇବାକୁ ଚେଷ୍ଟା କଲା । କିନ୍ତୁ ଯେତେ ସେ ନିଜକୁ ବାଧ କରୁଛି ବୀଣାର ନିଶ୍ୱାସ ସେତିକି ସ୍ପଷ୍ଟ ହେଉଛି ଆଉ ତାର ଶ୍ୱାସ ରୁଦ୍ଧ ହେଉଛି ।

ଗଭୀର ରାତ୍ରିରେ ରାତ୍ରିଚର ପକ୍ଷୀ ଗାନ ଗାଉଛି । ପାଖ ଆମ୍ବଗଛରେ ବାଦୁଡ଼ି ଆମ୍ବ ଖାଉଛି । ଆମ୍ବ ପଡୁଛି ଟୁପ୍‌ଟାପ୍ ଆଉ ବାଦୁଡ଼ିର ଫଡ଼୍‌ଫାଡ଼୍ । ଅନ୍ଧକାର ଛାଇ ଦେଇଛି । ମଣିଷର– ଜୀବଜଗତର ସବୁ ଶୋଇପଡ଼ିଛନ୍ତି । ମଣିଷର ଆଦିମ ପ୍ରବୃତ୍ତି କ'ଣ, ଜାଣେ ଏଇ ଅନ୍ଧକାର । ସେ ଖୁନ୍ କରେ– ସେ ତାର ସମସ୍ତ ଆଦର୍ଶ ଅତି ସୂକ୍ଷ୍ମରେ ବଳି ଦେଇପାରେ ଅନ୍ଧକାରରେ ।

ଜିପ୍‌ଟାର ଶବ୍ଦ ଆସୁଛି । ବୀଣା ଚିତ୍କାର କଲା । ତା'ପରେ ଶୂନ୍‌ଶାନ୍ ।

ତା'ପରଦିନ ଅତି ନିଜର ଲୋକଭଳି ମନମୋହନ ଆଗରେ ବୀଣା ଜଣାଇଲା– ଅନ୍ଧକାରରେ ସେ ଯେତେବେଳେ ଗଭୀର ନିଦ୍ରାରେ ଶୋଇଛି କିଏ ତା'ଉପରେ ଝାମ୍ପି ପଡ଼ିଲା । ତାର ଉନ୍ନତ ବକ୍ଷ ଉପରେ ନିଜର ବକ୍ଷ ଜଡ଼ାଇ ଧରିଲା । ସେ କିନ୍ତୁ ଚିହ୍ନିପାରିନାହିଁ ।

ମନମୋହନ ନୀରବ ହୋଇ ଶୁଣିଲା । ଠିକ୍ ଏପରି ଗମ୍ଭୀରତା ସବୁଠାରେ ସେ ପ୍ରୟୋଗ କରେ । କିନ୍ତୁ ଆଜି ସେ ଯେପରି ଅତିଷ୍ଠ ହୋଇ ଉଠିଛି । ହୁଏତ ବୀଣାକୁ କହିଦେଲେ ତ ଚଳନ୍ତା । ତା'ଛଡ଼ା ବୀଣାର ଯଦି ଆପତ୍ତି ନଥାଏ ସେ ବିବାହ କରନ୍ତା । 'ବିବାହ' ଏକଥାଟା ଅବଶ୍ୟ ସେ ଚିନ୍ତା କରିନାହିଁ । କିନ୍ତୁ ସେ ଚିନ୍ତା କରିବ ବୋଲି ଭାବୁଛି । ବେଶ୍ ଭଲ ଲାଗୁଛି । ତା' ଦେହର ଉତ୍ତାପ ଉପରେ ଚନ୍ଦନ ବୋଳା ହେଲା ପରି ଲାଗୁଛି ।

କିନ୍ତୁ ମନମୋହନ ବୀଣାକୁ କିଛି କହିପାରିନାହିଁ । ଏହା ବିପରୀତରେ ସେ ଆର୍ତ୍ତ ହୋଇ ଉଠିଛି ।

ମନମୋହନର ଭୀଷଣ ଜ୍ୱର ବଢ଼ିଚାଲିଛି । ବୀଣା ଖୁବ୍ ସେବା କରୁଛି । ଲୋକେ କହୁଛନ୍ତି ମା ଭଉଣୀଠାରୁ ଅଧିକ ।

ସଂଜବତି ଲାଗିଗଲାଣି । ବୀଣା ମନମୋହନର ମଥା ଉପରେ ହାତ ଚଳାଉଛି । ମନମୋହନର ଏବେ ଜ୍ୱର ଟିକିଏ ଛାଡ଼ିଛି । ଦେହ ଓ ହାତରେ ଦରଜ ଲାଗି ରହିଛି । ମନମୋହନର ମଥା ବୀଣାର ବକ୍ଷର ସ୍ପର୍ଶ ମନମୋହନକୁ ଅଧିକ ମୂର୍ଚ୍ଛ କରିଦେଇଛି । ସେ ଭାବୁଛି ତା'ର ମନର କଥା ସବୁ କହି ପକାଇବ ।

କିଛି ସମୟ ପରେ ଡାକ୍ତର ଟେଲିଗ୍ରାମ୍ ଆଣି କହିଲେ– ସାର୍, ଆମକୁ ଖାଇବାକୁ ଦିଅନ୍ତୁ ।

ମନମୋହନ ଲଣ୍ଠନର ଉଜ୍ଜ୍ୱଳ ଆଲୋକରେ ଦେଖିଲା । ସେ ଡିପୋଟି ମାଜିଷ୍ଟ୍ରେଟ୍ ହେଇଛି । ଏତେବଡ଼ ଆନନ୍ଦ ଆଖିରେ ବା ମୁହଁରେ ଟିକିଏ ବୋଲି ପ୍ରତିଫଳିତ ହେଲା ନାହିଁ । ପରନ୍ତୁ ମୁହଁଟି ଯେପରି ଶେତା ପଡ଼ିଯାଉଛି । କଣ୍ଠ ଶୁଖିଯାଉଛି । ସେ ଆଖି ବୁଜିଲା । ସମସ୍ତେ ଫେରିଗଲେ ।

ବୀଣା କହିଲା– ଆଜି ମୋର କି ଆନନ୍ଦ !

ମନମୋହନ କହିଲା– ତମର ଆନନ୍ଦ ଏଇ ଡିପୋଟି ମାଜିଷ୍ଟ୍ରେଟ ପାଇଁ– ଆଶ୍ଚର୍ଯ୍ୟ ! ସବୁଟା ଯୋଗ୍ୟତା ଉପରେ ବିଚାର କରାଯାଏନା ବୀଣା । ମୁଁ ଆଉ ଚାକିରି କରିବି ନାହିଁ ।

ବୀଣା ଚମକିପଡ଼ି ଚାହିଁଲା । ବୀଣାର ଛାତିର ସ୍ପର୍ଶ ଲାଗିଲା ମନମୋହନ ହୃଦୟରେ– ମସ୍ତକରେ ।

ମନମୋହନ ଚିତ୍କାର କରି କଇଁ କଇଁ କାନ୍ଦିଉଠିଲା– ନା ନା ଚାକିରି କରିବି ନାଇଁ– ନା- ନା- ନା ।

ବୀଣା ମନମୋହନର କାନ୍ଦ ଥମାଇବା ପାଇଁ କୋଳରେ ଜାକି ବସିଲା ।



# ଶରଣଂ ଗଚ୍ଛାମି

ଇତିହାସର ସମ୍ରାଟ ଅଜାତଶତ୍ରୁଙ୍କର ଦରବାର । ସ୍ୱପ୍ନା ରାଜନର୍ତ୍ତକୀ । ରୂପାଜୀବୀ । ପଦର ନୂପୁରର ନିକ୍ୱଣରେ ଅସ୍ଥିର ଚଞ୍ଚଳ ହୋଇଛି ଅଜାତଶତ୍ରୁର ହୃଦୟ-ମନ । ପିତାଙ୍କୁ ହତ୍ୟାକରି ଅଜାତଶତ୍ରୁ ଆସୀନ ହୋଇ ମହାମନ୍ତ୍ରୀ ଏବଂ ସେନାପତିଙ୍କୁ ନେଇ ପୂର୍ଣ୍ଣତଃ ବ୍ରାହ୍ମଣ୍ୟ ଧର୍ମର ପ୍ରଚାର କାର୍ଯ୍ୟରେ ଲାଗିପଡ଼ନ୍ତି ।

ସମ୍ମୁଖରେ ବୌଦ୍ଧଧର୍ମ– କ୍ରମଶଃ ସଂଚରି ଯାଉଛି ଦେଶସାରା ।

ସ୍ୱପ୍ନାର ନିକ୍ୱଣରେ ନିର୍ଦ୍ଦେଶିତ ଅଜାତଶତ୍ରୁ ଆଦେଶ କରନ୍ତି– ମୋ ରାଜ୍ୟରେ ବୌଦ୍ଧଧର୍ମର ପ୍ରଚାର ଅସମ୍ଭବ । ଯେଉଁଠାରେ ବୌଦ୍ଧଭିକ୍ଷୁ ଦେଖୁଚ ଜ୍ୱଳନ୍ତ ଅଗ୍ନିକୁଣ୍ଡରେ ଅବା ଶୈଳ ଶିଖରରେ ନିକ୍ଷେପ କର । ହତ୍ୟା କର । ଏହାପରେ ଏହି କାହାଣୀର ଆରମ୍ଭ ।

ରାକା ରଜନୀରେ ଛାଇଛି ଚନ୍ଦ୍ରିକାର ଛଟା । ପବନ-ଗଗନ ନିଥରରେ ବସନ୍ତର ଏକ ସୁଷମ ରାତ୍ରିର ଅନ୍ତରଙ୍ଗ ନିବିଡ଼ ମିଳନର ଡାକ । ସ୍ୱପ୍ନା ଆଉ ଅଜାତଶତ୍ରୁ ଘୋଡ଼ା ଉପରେ ବହୁ ଦୂରକୁ ଆଗେଇ ଯାଇଛନ୍ତି । ଏଇତ ସୁନ୍ଦର ପୃଥିବୀ । ସ୍ୱପ୍ନା କହେ– ରସିକଶେଖର, ଏ ରାତ୍ରି କେବଳ ଆମ ପାଇଁ ହୋଇଛି । ଆମର ମିଳନ ପାଇଁ । ଅଜାତଶତ୍ରୁ କହନ୍ତି– ସ୍ୱପ୍ନା, ତମେ ପାଖରେ ଥିଲେ ମୋର ତୃଷା ବଢ଼େ ନାହିଁ । ଏ ପୃଥିବୀରେ ସବୁ ଉପଦେଶଗୁଡ଼ିକ ମୁଁ ଅନୁପଲବ୍ଧି କରେ । ତମର ମୁଖଶଶୀ ତଳେ ମୁଁ ଦେଖେ– ମୋର ବୀରତ୍ୱର କାହାଣୀ । ଆଉ ଏଇ ବୌଦ୍ଧଭିକ୍ଷୁଗୁଡ଼ାକର ମରଣକାଳୀନ ମୃତ୍ୟୁ ହସ ପରି ତମେ ଦିଶ ଶୋଭାମୟୀ । ସ୍ୱପ୍ନା ନିରବ ରହେ । ତା'ର ତେବେ ଏତେ ରୂପ ଅଛି ? ଏଇ ରୂପରେ ସେ ଶତଶତ ବୌଦ୍ଧଭିକ୍ଷୁ ବିନାଶ କରୁଛି ? ଗ୍ରାମରୁ ଗ୍ରାମ– ନଗରରୁ ନଗର ଧ୍ୱଂସ କରୁଛି ? ସେ ହୃଦୟସ୍ଥିତ ଉଚ୍ଛ୍ୱାସକୁ ଚାପି ନପାରି ଘୋଡ଼ାକୁ ଦୌଡ଼ାଇଲା– ଆଗକୁ– ବହୁ ଆଗକୁ ।

ହଠାତ୍ ପ୍ରଳୟଙ୍କରୀ ଝଡ଼ ଆକାଶରେ ଜାଗି ଉଠିଲା । ଆସ୍ତେ ଆସ୍ତେ ଟିକିଟିକି କଳାମେଘରେ ଆକାଶ ଛାଇଗଲା । ସେ ଚିତ୍କାର କରି ଡାକିଲା– ସମ୍ରାଟ– ସମ୍ରାଟ ! !

ପଛକୁ ଫେରି ଅନାଇ ଦେଖିଲା ଅନ୍ଧକାର ଛାଇଯାଇଛି । ସେ ଉତ୍କଣ୍ଠିତ ହୋଇ ପୁଣି ଘୋଡ଼ାର ବେଗ ଦେଲା– ଜୋର୍‌ରେ । ଝଡ଼ ଉଠିଲା– ବଜ୍ରରେ ମେଦିନୀ କମ୍ପିଲା ।

ମଧ୍ୟରାତ୍ରିରେ ସ୍ୱପ୍ନା ମୁଣ୍ଡ ଉଠାଇଲା, ଦେଖିଲା ସେ ଏକ କର୍ଦ୍ଦମାକ୍ତ ଗର୍ତ୍ତ ଭିତରେ ପଡ଼ିଛି– ଆଉ ତା' ଉପରେ ଶୋଇଛି ଏକ ବିରାଟ ଗଛ ।

ଅନ୍ଧକାର ଭିତରେ ବଜ୍ର ଓ ବିଜୁଳି ଭିତରେ କିଏ ତାର ମଥା ଟେକିଧରି ଉଠାଇ ନେଉଛି । ସେ ଡାକିଲା– କିଏ ତମେ ?

ସିଏ କହିଲା– ଭୟ ନାହିଁ ମା, ମୁଁ ତ ଭଗବାନ ବୁଦ୍ଧଙ୍କର ସେବକ ମାତ୍ର ।

ସ୍ୱପ୍ନାର ଅନ୍ତର କଣରେ ଯେପରି ଏକ ସ୍ଫୁଲିଙ୍ଗ ଜାଗିଛି । ବୁଦ୍ଧ– ବୁଦ୍ଧ– ବୁଦ୍ଧ । ପୁଣି ସେଇ ଶବ୍ଦ । ହିଂସାରେ ତାର ଅନ୍ତର ଥରିଉଠିଲା ।

–ମୁଁ କେଉଁଠି ଅଛି ?

–ତାମ୍ରଲିପ୍ତ ପାଖରେ, ଉଠ ମା, ଅଦୂରରେ ଉପାସନାର ମନ୍ଦିର ! ସେଠାରେ ତୁମେ ଆରାମ ପାଇବା ପାଇଁ ଯଥେଷ୍ଟ ଅବସର ପାଇବ । ଶାନ୍ତି ପାଇବ ।

–କିନ୍ତୁ ମୁଁ ଯିବିନାହିଁ । ଜାଣିଛ ମୁଁ କିଏ ? ନାମ ଶୁଣିଥିବ, ଅଜାତଶତ୍ରୁଙ୍କ ଦରବାରର ନର୍ତ୍ତକୀ– ସ୍ୱପ୍ନା, ତୁମପରି ସହସ୍ର ଭିକ୍ଷୁଙ୍କୁ ମୁଁ ଜାଳିପୋଡ଼ି ଦେଇଛି । କାହିଁକି ଜାଣ– ଏ ଧର୍ମ ଅସମ୍ଭବ ।

–ତମେ ଯେ ବୁଝୁନା କାହିଁକି ମା, ସେ ସବୁ ବୁଦ୍ଧଙ୍କର ଦୟା । ତମେ ଜାଳିପୋଡ଼ି ଦେଇନ ମା– ତାଙ୍କର ହୁଏତ ସେଇଆ ଥିଲା ଭାଗ୍ୟ । ସେମାନେ ସେଥିପାଇଁ ଉଦ୍ଦିଷ୍ଟ । ବର୍ଷା ଓ ବିଜୁଳି– ତମ ଦିହରେ ଉତ୍ତାପ– ଆସ ମା ।

–କିନ୍ତୁ ଭିକ୍ଷୁ, ମୁଁ ଯିବିନାହିଁ । ମୋର ମରଣକୁ ଏହିପରି ନିଶ୍ଚିତ କରିଯିବି ।

–ମା' ତେବେ ମୁଁ ତ ତମକୁ ଛାଡ଼ି ଯାଇପାରିବି ନାହିଁ । ମୁଁ ସେବକ ମାତ୍ର । ବ୍ରାହ୍ମଣ୍ୟ ଧର୍ମର ଶତ୍ରୁ ବୌଦ୍ଧଧର୍ମ ହୋଇପାରେ, କିନ୍ତୁ ମା ତମେ ନାରୀ ଜଗଦ୍ଧାତ୍ରୀ– ଧରିତ୍ରୀ– ଦଶଭୁଜା । ଆଉ ମୁଁ ଏକ ମନୁଷ୍ୟ ମାତ୍ର । ଆଜି ମଣିଷ ମଣିଷ ଭାବରେ ନିଜକୁ ସ୍ୱୀକାର କରିନେଇ କଣ ଶାନ୍ତି ଓ ସହାବସ୍ଥାନ ଅସମ୍ଭବ ମା ? ମା ଯେପରି

ପୁଅକୁ ଭଲପାଏ, ପ୍ରିୟା ଯେପରି ପ୍ରିୟକୁ ଭଲପାଏ– ତାହାର ସମନ୍ୱୟ ହିଁ ଏହି ତ୍ରିପିଟକ । ସର୍ବଧାରାର ସମନ୍ୱୟ– ସର୍ବ ଶାନ୍ତିର ମୟୂଖ ହିଁ ଏହି ପଞ୍ଚଶୀଳ– ପଞ୍ଚପ୍ରାଣର ଆଧାର ସ୍ୱରୂପ ।

ସ୍ୱପ୍ନା ନୀରବ ରହିଲେ ଏବଂ ଅଚେତ ହୋଇପଡ଼ିଲେ । ଯେତେବେଳେ ତାଙ୍କର ନିଦ୍ରାଭଙ୍ଗ ହେଲା ସେ ଶୁଣିପାରିଲେ ଏକ ସୁଦୂର ନୀଳ ପାହାଡ଼ର ତଳେ ସୂର୍ଯ୍ୟୋଦୟ ପରି ଏକ ସଂଗୀତର ଝଙ୍କାର– ଶାନ୍ତି, ମୈତ୍ରୀର ଏହି ଅପୂର୍ବ ପାରାବାର । ଅହିଂସାର ପ୍ରତୀକ ହେଉ ତମ ବିଜୟର ଯାତ୍ରା । ଅଷ୍ଟ ସୋପାନରେ ତମେ ତମର ହୃଦୟ କୁଞ୍ଜ ପୁଷ୍ପିତ କର । ସତ୍ୟ ହେଉ ତମର ଆମରଣ ବ୍ରତ– ତ୍ୟାଗ ହେଉ ତମର ବିଘ୍ନର ସୀମାର ସୌଧ ।

ଏକ ଅପୂର୍ବ ଛନ୍ଦର ରାଗ ସ୍ୱପ୍ନାର କାନରେ ଲହଡ଼ି ମାରିଛି । ସେ ଆଖି ବୁଜିଲେ । ଶୀତଳ, ସୁଷମାୟିତ ହୋଇ ଉଠିଲା ସମସ୍ତ ଦେହଟି ।

ଦ୍ୱିତୀୟ ଦିନ ସ୍ୱପ୍ନା ଭେଟିଲେ ଜଣେ ଭିକ୍ଷୁଣୀଙ୍କୁ । ଅପୂର୍ବ ସୁଷମାମୟୀ । ଅଙ୍ଗରେ ଲେଖିଛି କେବଳ ସନ୍ନ୍ୟାସିନୀ ରୂପ । ଏହି ଉଜ୍ଜ୍ୱଳତା ଭିତରେ ସ୍ୱପ୍ନା ନିଜକୁ ଧିକ୍‌କାର କରି କହିଲେ– ମୁଁ କଣ ଏତେ ସୁନ୍ଦର ହୋଇଛି ? ସେ ଶୀଘ୍ର ନିର୍ଝରିଣୀ ନିକଟକୁ ଯାଇ ନିଜର ରୂପ ଦେଖିଲେ– ନା, ନା ସ୍ୱପ୍ନା, ତମର ଏତେ ରୂପ କାହିଁ ?

ସ୍ୱପ୍ନା ଫେରିଲେ । ଭିକ୍ଷୁ ବସିଛି ଧ୍ୟାନରେ । ଭିକ୍ଷୁଣୀ କୁଢ଼ାଇ ଯାଉଛି ଫୁଲ ଭିତରେ ତାର ସମସ୍ତ ପ୍ରେମ-ସରାଗ-ସ୍ନେହ ଭିକ୍ଷୁର ପଦତଳରେ । ସ୍ୱପ୍ନାର ପାପମନ ତଳୁ କଳାମେଘ ଘୁଞ୍ଚି ଘୁଞ୍ଚି ଯାଉଛି । ଭିକ୍ଷୁଣୀ ଫେରିଗଲା । ସ୍ୱପ୍ନା ଫେରିଗଲା । ସ୍ୱପ୍ନା ଫେରିଲା ସନ୍ତର୍ପଣରେ । ବସିଲା ବହୁତ ସମୟ, ଆଖି ମେଲିଲା ଭିକ୍ଷୁ–

–ଭିକ୍ଷୁ ଆନନ୍ଦ ! ମୁଁ ରୂପଜୀବୀ, ରାଜନର୍ତ୍ତକୀ ।

–କ'ଣ କହୁଛ ସ୍ୱପ୍ନା ! ଶରୀର– ଏଇ ଦେହ ମନ୍ଦ ହେଲେ କଣ ହେଲା ମନ ସ୍ୱଚ୍ଛ ଅଛି ତ !

–ତମେ ମୋତେ ତମର କରିନିଅ; ଆନନ୍ଦ । ମୋତେ ତମର କରିନିଅ । ମୋତେ ପରମ ଶାନ୍ତି ବୁଦ୍ଧଙ୍କ ପଦତଳକୁ ନେଇଯାଅ । ସେଦିନ ପ୍ରାକ୍ ସନ୍ଧ୍ୟାରେ ଦୀକ୍ଷିତ ହେଲେ ଅଜାତଶତ୍ରୁଙ୍କର– ସମ୍ରାଟଙ୍କର ହୃଦୟ ଉପବନର ଚନ୍ଦ୍ରିକା– ସ୍ୱପ୍ନା ।

ତା'ପରଦିନ ଫେରିଲେ ସ୍ୱପ୍ନା– ରାଜପ୍ରାସାଦକୁ । ଆନନ୍ଦର କଥା ମନେପଡୁଛି– ଏଇ ଦେହ କଥା କହୁଛ ? କିଛିଦିନ ପରେ ଯେତେବେଳେ ତମର ଯୌବନ ସରି ଆସିବ– ତମେ ଅବହେଳିତ ପୋଷାକ ପରି ପଡ଼ି ରହିବ ସିନା । ବୁଦ୍ଧ ହିଁ ତମକୁ ଶାନ୍ତି ଦେବେ । ଆନନ୍ଦ ଦେବେ । ବୁଦ୍ଧଙ୍କର ବାଣୀ– ଏ ପାପ ତାପ ମଳିନ ପୃଥିବୀରେ ଦେହର ମୂଲ୍ୟ କଣ ? ମନ ହେଲା ସ୍ଥାୟୀ ।

ପ୍ରାସାଦର ଏକ ଗବାକ୍ଷରେ ଭୁବନମୋହିନୀ ସ୍ୱପ୍ନା– ନୃତ୍ୟ ଛାଡ଼ି ଆରମ୍ଭ କଲେ ବୁଦ୍ଧସ୍ତୁତି । ବୁଦ୍ଧଂ ଶରଣଂ... । ଚକିତ ହୋଇ ଉଠିଲେ ଦାସଦାସୀ । କଥା ବିଜୁଳି ପରି ଖେଳିଗଲା । ଏ ଅଦ୍ଭୁତ– ବିସ୍ମୟ ପାଇଁ ଅଜାତଶତ୍ରୁ– ମନ୍ତ୍ରୀ-ସେନାପତି ସଂପୂର୍ଣ୍ଣ ବିଚଳିତ ହୋଇପଡ଼ିଲେ ।

ବୌଦ୍ଧଧର୍ମ ଲହଡ଼ି ପରି ଖେଳି ଆସୁଛି । ବ୍ରାହ୍ମଣ୍ୟ ଧର୍ମ ସବୁ ଅନ୍ୟାୟରେ ମାଡ଼ି ଚାଲିଛି ସାମ୍ୟ ମୈତ୍ରୀ ଶାନ୍ତି ଅହିଂସା ସତ୍ୟର ଜ୍ଞାନ କରି ।

ସେଦିନ ମଧ ସେହିପରି ଦରବାର ହେଲା । ଲକ୍ଷ ଲକ୍ଷ ଦର୍ଶକ ଗୁଣ୍ଡ ହେଲେ । ଅଜାତଶତ୍ରୁ ହୁଂକାର କଲେ– ସ୍ୱପ୍ନା, ତମେ ଅନ୍ୟାୟ କରିଛ । ତମେ ଏଇ ବିଧର୍ମୀ ବୌଦ୍ଧଭିକ୍ଷୁର ପ୍ରେମରେ ପଡ଼ି ବୌଦ୍ଧଧର୍ମର ପ୍ରଚାର କରିଛ । ସେଥିପାଇଁ ତମ ପାଇଁ ଏଇ ବିଷପାତ୍ର ରହିଛି । ତମକୁ ପାନ କରିବାକୁ ହେବ ।

ଦ୍ୱିଧା ନାହିଁ– ଚିନ୍ତାଶୂନ୍ୟ ମାନସରେ ଅଳ୍ପ ହସି କହିଲେ ସ୍ୱପ୍ନା– ସମ୍ରାଟ, ମନୁଷ୍ୟଜୀବ ଜୀବନରେ ମୃତ୍ୟୁ ଅନିବାର୍ଯ୍ୟ । ମୁଁ ମୃତ୍ୟୁକୁ ଡରୁନାହିଁ । ଏହି ବିଷପାତ୍ର ପାନ କରି ମୁଁ ଶୀଘ୍ର ପରମଶାନ୍ତି ବୁଦ୍ଧଙ୍କ ପାଦତଳରେ ପହୁଞ୍ଚିବି ।

ଏହା କହି ହସି ହସି ପାନ କରିଲେ ସ୍ୱପ୍ନା । ଅଦେହ ହେଲେ ସେ ।

ଅଜାତଶତ୍ରୁ ଚିତ୍କାର କରି ଉଠିଲେ– ସ୍ୱପ୍ନା– ସ୍ୱପ୍ନା– ଏ କ'ଣ କଲ ସ୍ୱପ୍ନା ?

ଦ୍ୱାର ମଣ୍ଡପରେ ଭିକ୍ଷୁ ଆନନ୍ଦ କହିଲେ– ମହାରାଜ– ନା, ଚିତ୍କାର କର ନାହିଁ । ସେ ଶୋଇଛି, ଶାନ୍ତିରେ ଶୋଇଛି । ଖଣ୍ଡାଯୁଦ୍ଧରେ ଶାନ୍ତି ନାହିଁ ମହାରାଜ ।

ଅଜାତଶତ୍ରୁ କହିଲେ– ଭିକ୍ଷୁ ମୁଁ ଆଜି ଅସ୍ଥିର । ମୋର ଗତ ଜୀବନର ଦୁଷ୍କୃତି ପାଇଁ ମୁଁ ଅତିଷ୍ଠ ।

—ମହାରାଜ, ହୃଦୟର ବିକାର ଏବଂ ଅଶାନ୍ତିର ବିଲୟ ସ୍ଥାନ ସେହି ହୃଦୟରେ । ଶାନ୍ତି ଅଛି ହୃଦୟରେ । ବ୍ୟାକୁଳତା ହେବା ମାତ୍ରକେ ସୂର୍ଯ୍ୟୋଦୟ ହେବ ।

—ଭିକ୍ଷୁ, ତେବେ ମୋର ଏ ଦଗ୍ଧ ମଳିନ ହୃଦୟରେ କ'ଣ ସମ୍ଭବ ?

—ସମ୍ରାଟ ସେହି ଶାନ୍ତି ମୈତ୍ରୀ ଅହିଂସା ସତ୍ୟର ମହିମା ଗାନ କଲେ– ସେହି ପଞ୍ଚଶୀଳକୁ ପ୍ରାଣ କଲେ, ନିଜକୁ ଅର୍ପଣ କରିପାରିଲେ, ସମ୍ଭବ ହେବ ।

ଏହାପରେ ଅଜାତଶତ୍ରୁ ବୌଦ୍ଧଧର୍ମର ଏକ ବିଶେଷ ପୃଷ୍ଠପୋଷକ ହେଲେ ବୋଲି ଇତିହାସ କହେ ।

ବୁଦ୍ଧଂ ଶରଣଂ ଗଚ୍ଛାମି ।

ସଙ୍ଘ ଶରଣଂ ଗଚ୍ଛାମି ।

ଧର୍ମଂ ଶରଣଂ ଗଚ୍ଛାମି ।



# କାଚକାଞ୍ଚନ

ଉଷମାନ୍ ପୁରୁଣା ଟିଣ ସୁଟ୍‌କେଶ୍‌ଟା ତଳକୁ ରଖିଲା । କେଡ଼େ ମିଠା ଆବାଜ୍ । କିଏ ଗାଉଛି ଗୀତ ? ହୀରାକୁଦରେ ବର୍ଷଟିଏ ବିତାଇ ଫେରୁଛି । ଇମିତି ଗୀତ ତ ଶୁଣିନାଇଁ– କେଡ଼େ ମିଠା ।

କହନ୍ତି ରାଧିକା ଶୁଣ ଶିରୀପତି
କାମଜର କଲା ନିଦ ନାହିଁ ରାତି
କା ସଙ୍ଗତେ ମାତି ରହିଲ
ବସିଥିଲି ଚେତି, ବଉଲ
ଡାପିଲା ପଣତ ଲୁଗା
ରସେ ଗଲା ମାତି
ଡାଳରେ ବସାଇ ମୂଳ କାଟିଲ
ଦମ୍ଭ ନାହିଁ ଛାତି ହେ–

ଉଷମାନ୍ ଏବେ ବିଡ଼ିଟାଏ ଧରାଇଲା । ମନ ଭିତରେ ତାର କେତେ ଅତୀତର ସବୁଜ ମନର ବ୍ୟଥା ଉଙ୍କିମାରିଲା । ଅମିନା ଅନେଇ ବସିଥିବ । ତାର ଦୁଇ ପିଲାକୁ ଅମିନା କଣ ବୁଝାଉଥିବ । ଉଷ୍‌ମାନକୁ ଦିଶୁଛି ଏଇ ମହାନଦୀ ବାଲି ଟପିଗଲେ ସୋନପୁର ପଡ଼ିବ । ଏଇ ବର୍ଷକ ଭିତରେ ଅମିନା କେତେଥର ଝଗଡ଼ା କରିଛି ଚିଠି ଦେଇ । ତମେ ଆସୁନା କାଇଁକି, ଖାଲି ଟଙ୍କା ପଠାଇଦେଲେ ହେଲା ? ଯଦି ଟଙ୍କାରେ ସବୁ ଚଳିଯାନ୍ତା ମୋର ବେପାର ବଣିଜ, ଚୁଡ଼ି-ସିନ୍ଦୂରରେ କରିଲେ ଚଳିଯାଇ ନଥାନ୍ତି କି– ନିକା କରିବା କି ଦରକାର ଥିଲା ?

ଉଷମାନ୍ ଆଉ ଗୋଟିଏ ବିଡ଼ି ଟାଣିଲା– ବହୁ ଦିନରୁ ଅମିନାର ଚିଠିପତ୍ର କିଛି ପାଇନାହିଁ । ତା ସାଙ୍ଗରେ ଯେଉଁ ଗଣ୍ଡା ଘାସିପଡ଼ାର ଟୋକା ଅମୂଲ୍ୟ କାମ କରୁଥିଲା ସେ କହୁଥିଲା ଅମିନା କୁଆଡ଼େ କେଉଁ ଦଫାଦାର ସାଙ୍ଗରେ ଫସିଯାଇଛି । ଅମୂଲ୍ୟର ଭଉଣୀ ରାଧା ହୀରାକୁଦରେ ପଞ୍ଜାବୀ ଡ୍ରାଇଭରମାନଙ୍କଠାରୁ ବହୁତ ପଇସା କମେଇଛି । ଉଷ୍‌ମାନ ଜାଣିଛି, ଦେଖିଛି । ଅମିନା କଥା ଶୁଣିବାଠାରୁ ସେ ରାଧାକୁ କଥାବାର୍ତ୍ତା

କରିବା ପାଇଁ ତାର ତାଟି ଘେରା ବସାଘରକୁ ରାତିରେ ଦିନରେ ଡାକିଛି । ଅନେକ କଥା ହୋଇଛନ୍ତି ସେମାନେ– ଦେହର ଓ ମନର । ଉଷ୍ମାନ ମଧ ମନରେ ଠିକ୍ କରି ନେଇଛି ରାଧାକୁ ସେ ନିକା କରିନେବ । ଆଉ ତାର ନାମକରଣ କରିବ ସେଇ ସାହାଜାହାନ୍‌ର ମମତାଜ୍ । ଉଷ୍ମାନର ମମତାଜ୍ ।

ଶୁଭୁଛି–

ଗଜେନ୍ଦ୍ର ଗମନୀ ଗୋରୀ ଦେହ
ଧକ ଧକ
ଗଣ୍ଡସ୍ଥଳେ ଚୁମ୍ବନ ମୁଁ
ବାରେ ଦେବି ଏକ
ଗୋଡ଼ର ନୂପୁର ଡାକଇ
କାଖର କୁମ୍ଭ ରଖ–
ଡାଲଖାଇରେ...

ଉଷ୍ମାନ ଦୀର୍ଘ ଦୁଇ ମାଇଲ ବାଲିରେ ମହାନଦୀରେ ଚାଲି ଚାଲି ସେଇ ରାଧାର କଥା ମନେ କରୁଥିଲା । ଉଷ୍ମାନ ନଦୀଗର୍ଭକୁ ପହଁଚିଲା । ତେନ୍ତୁଳିଘାଟ ତଳକୁ କେଉଟପଡ଼ା– ତା ତଳକୁ ଡଙ୍ଗା ଉପରେ କିଏ ସୁର ଧରିଛି ।

ଯୌବନରୁ ସୁଧାରସ
ଯାଉଅଛି ଝରି
ଜନମୁ ପୁରୁଷ ସଙ୍ଗ
କେବେ ନାହିଁ କରି
ଜଉମୁଦେ ଯୁବାଦେହ
କେତେ ଥିବ ଧରି
ରସରକେଲିରେ– (କେଲିରେ)

ଡଙ୍ଗାତଳକୁ ଓହ୍ଲାଉ ଓହ୍ଲାଉ ରାଧା ଆସି ଉଷ୍ମାନକୁ ଆଶ୍ଚର୍ଯ୍ୟ କରାଇ ଦେଲା । ଉଷ୍ମାନ ତା ଡାକ ନାମରେ କହିଲା– ତାଜ୍– ମେରେ ପ୍ୟାରେ ତାଜ୍, କେବେ ଅଇଲୁ ?

ରାଧିକା ଜିନିଷପତ୍ର ଡଙ୍ଗାରୁ ହସି ଓହ୍ଲାଇଲା କେବଳ । ଉଷ୍‌ମାନ ଘରକୁ ପହଞ୍ଚିବା ପରେ ଅମିନା ତାର ନାରୀ ସୁଲୋଭଚିତ ସବୁ ପ୍ରକାର ମାନ ଅଭିମାନ କଲା ସତ କିନ୍ତୁ ଉଷ୍‌ମାନର ମତିଗତିରୁ କିଛି ଫଳପ୍ରଦ ହେଲା ନାହିଁ ।

ସାନ ଲଡ଼୍‌କା ଲତିଫ୍ ଆସି କୁଣ୍ଢାଇଲା, ବଡ଼ ଲଡ଼୍‌କା ସୁଲେମାନ ବୋକ ଖାଇଲା । ଉଷ୍‌ମାନ ଉପରକୁ ଦେଖାଇ ସବୁ ସ୍ନେହ ଶ୍ରଦ୍ଧା ଦେଖାଇଲା ସତ କିନ୍ତୁ ତା'ର ଅନ୍ତର ପ୍ରକାଶ ହେଲା ନାହିଁ ।

ଅମିନାର ମନ ଦୁଃଖ ହେଲା ଆଉ ଶଙ୍କାକୁଳ ହେଲା । ବର୍ଷକର ରାତିର ଦୁଃଖ ଉଷ୍‌ମାନର ଛାତି ଉପରେ ମଥାରଖି ଯେଉଁ ଭୁଲିବାର ସ୍ୱପ୍ନ ଦେଖିଥିଲା, ଉଷ୍‌ମାନ ଯେ ରାତିଯାକ ଘାସିପଡ଼ାରେ କଟାଉଛି ତା ପକ୍ଷରେ ମର୍ମନ୍ତୁଦ ହେଲା ।

କଥାଟା ଅଛପା ରହିଲା ନାହିଁ । ସାହିର ମୁଖିଆ କରିମ ବୁଢ଼ା ଉଷ୍‌ମାନକୁ କହିଲା– ବେଟା ଏ ଯବାନୀ ମନିଷର ସବୁଠାରୁ ବଡ଼ ଦୁଷ୍ମନ୍ । ତୋର ଅମିନା ବିବି ଅଛି, ଦୋ ଲଡ଼କା ଅଛି । ଆଉର ନିକା ଜରୁରତ୍ କାଁ କରି ।

ଉଷ୍‌ମାନ ମାନିଲା ନାହିଁ । ଅମିନା ମଧ ମତଦେଲା ସେ ଉଷ୍‌ମାନ କଥାରେ ରାଜି । ଉଷ୍‌ମାନର ସୁଖ ଦୁଃଖ ତା'ର ଦୁଃଖ ସୁଖ ।

ଘାସିଆଣି ଟୋକି ରାଧିକା ଉଷ୍‌ମାନର ମମତାଜ୍ ହୋଇ ଆସିଲା । ମମତାଜ୍‌ର ସାବୁନ୍, ବାସ୍ନା ତେଲ, ଗୁଡ଼ାଖୁ, ସାୟା, ବ୍ଲାଉଜ୍, ବଡ଼ିସ୍, ଚପଲ ନହେଲେ ଅଚଳ ।

ମାସଟିଏ ବେଶ୍ ଭଲ ଚଳିଗଲା ଉଷ୍‌ମାନ । ତା'ପରେ ପଇସା ହାତରୁ କମିଗଲା । ଘଳିଚିରିବାକିରି କାମଦାମ କିଛିନାହିଁ । ଉଷ୍‌ମାନ ଗୋଟାଏ ମନିହାରୀ ଦୋକାନ ମଧ ଶେଷ ପୁଞ୍ଜି ନେଇ ବସିଲା । ଦିନର ଆୟ ଯେତେ ସିନେମା ଖରଚକୁ ନଅଣ୍ଟ ପଡ଼ିଲା । ତୃତୀୟ ମାସରେ ମମତାଜ୍‌ର ବାସ୍ନାତେଲ କଣ ନଡ଼ିଆତେଲ ଟିକିଏ ମିଳିବା କଷ୍ଟକର ହେଲା । ଠିକ୍ ସେତିକିବେଳେ ମମତାଜ୍ ଅଡ଼ି ବସିଲା ତା ପାଇଁ ଖଣ୍ଡେ କୁମ୍ଭପକା ଶାଢ଼ି ଦରକାର ।

ଉଷ୍‌ମାନର ଦୋକାନ ଭାଙ୍ଗିଯାଇଛି । ବଜାରରେ ଯେଉଁ ବାକି ପଡ଼ିଛି ସେଇ ଡରରେ ସେ ଦୋକାନ ସାମ୍ନାରେ ଯାଉନାହିଁ ମଧ ।

ସକାଳୁ ତାଜ୍ ଅମିନାକୁ କହୁଥାଏ– ମର୍ ଘଏତା ଲୋ ଘଏତା– ଏ କାଏଁର ଘଏତା ? ନୁଗାଖଣ୍ଡେ ଦବା ନାଗି କ୍ଷେମତା ନାୟଁ– ଘଏତା– ହାୟଲୋ ମର କାଏଁ ଅଭାବ ଅଛି ?

ଅମିନା ଚୁପ୍‌ହୋଇ ରହିଲା । ସାତ ଆଠ ଖଣ୍ଡ ଶାଢ଼ି ଥାଇ ମଧ ତାଜ୍‌ର କମ୍ ଗରମ ନାହିଁ । ସେ ଚୁପ୍ ହୋଇ ବସିଲା । ଅମିନା ତାର ଖଣ୍ଡିଏ ଲୁଗା ଉପରେ ତାଳି ପକାଇ ଚଳଉଛି । ଅଧା ଶୁଖାଇ ଅଧା ଓଦାକରି ଚଳୁଛି । ସେ ତ କାହିଁ ଉଷ୍‌ମାନକୁ କହିନାହିଁ ! ଉଷ୍‌ମାନର ସବୁ ସାର୍ଟ ଓ ଲୁଙ୍ଗି ଚିରିଯାଇଛି । ସେ ବାହାରକୁ ଉଙ୍କିମାରିଲା ।

ଉଷ୍‌ମାନ କଣ ଭାବି ଭାବି ବିଡ଼ି ପରେ ବିଡ଼ି ଖାଇଯାଉଛି । କେଉଁଆଡ଼େ ଋହୁଁନି । କଣ ଇମିତି ଭାବିଯାଉଛି ? ଅମିନା ଆଖିରେ ଲୁହ ଆସିଲା । ତା ଆରଦିନ ସକାଳୁ ଉଷ୍‌ମାନ ତା'ର ପୈତୃକ ଦୁଇଟି ଗୋରୁକୁ ହାଟକୁ ନେଇଗଲା ଏବଂ ବେଳ ରତ ରତ ହେଉଛି ତେଲ ନଦୀ ପାରହେଲା ।

ମୁହଁ ଅନ୍ଧାର ହୋଇଥାଏ । ସେ ଘର ଭିତରକୁ ଯିବା ଆଗରୁ ପିଣ୍ଡାରେ କିଏ କଥା ହେବାର ଶୁଣିଲା ।

ଉଷ୍‌ମାନ୍ ଡାକିଲା– ତାଜ୍ ମେରେ ତାଜ୍, ଏଇ ରଙ୍ଗଟା ତୋର ଦିହଥି କେନ୍ତା ସାଜବା, ମମତାଜ୍ ଆସିଲା । ବାଡ଼ିପଟ ଦେଇ ଦଫାଦାର ଗଲା ।

ଡିବିରି ଆଲୁଅ ଦେଖାଇଲା ଅମିନା । କୁମ୍ଭପକା ଫିକା ଆକାଶୀ ରଙ୍ଗର ପଚିଶ ଟଙ୍କିଆ ଶାଢ଼ି ।

ହାତରେ ଟିକିଏ ଧରି ତାଜ୍ ହସିଲା, ଏଇ ମର ପଚିଶ ଟଙ୍କିଆ ଶାଢ଼ି ? ଦେଖ ଦେଖ ଏଇ ଶାଢ଼ିଟା କେତେ ଦାମ୍ ହେବ ଦେଖ ।

ଆଲୁଅରେ ଝକ୍ ଝକ୍ କରୁଛି– ଋଳିଶ ଟଙ୍କାରୁ କମ୍ ତ ହେବ ନାହିଁ ।

ଉଷ୍‌ମାନ– ତର ଘର ତୁଇ ସମ୍ଭାଳ । ମୁଁଇ ମୋର ଯାଉଛେ– ଦଫାଦାର ଘରକେ ଯାଉଛେ ।

ଉଷ୍‌ମାନ କିଛି କହିଲା ନାହିଁ ପୁଣି ଆସି ମଝି ବାହାରେ ବସି ବିଡ଼ି ଖାଇଲା । ତାଜ୍ ତାର ସବୁ ଜିନିଷପତ୍ର ଟଣାଓଟରା କରି ବାନ୍ଧିଲା– ଗଲା । ସବୁ ଶୁଣିଲା ଉଷ୍‌ମାନ ।

ଆକାଶରେ ମେଘ ଜମି ଆସିଥାଏ । ବର୍ଷା ପଡୁଛି । ଅମିନା ଡାକିଲା– ଭିତରକୁ ଆସ । ଚାଲି ଆସ, ବର୍ଷା ।

ଉଷ୍ମାନ ବସିଛି, ବସିଛି ।

ଅମିନା ଡାକିଲା– ଭିତରକୁ ଆସ । ଆସ । ଉଷ୍ମାନ ଭିତରକୁ ଆସିଲା । ଘରେ କଣ ଅଛି ଯେ ଏହି ଥଣ୍ଡା ପବନରୁ ଦେହ ଢାଙ୍କିବ ? ଅମିନାର ଶତ ସିଲାଇ ସତ୍ତ୍ୱେ ଲୁଙ୍ଗିଟା ଚିରି ଚିରି ଯାଉଛି ।

ଉଷ୍ମାନ ଡାକିଲା– ଅମିନା ତୁ ପହନ୍‌ଲେ, ଅମିନା କିଛି ନକହି ଶାଢ଼ିଟା ଛାତି ଉପରେ ଚାପି ଧରିଲା । ଆଖି ଲୁହ ଯେପରି ଚିପି ବାହାରି ଆସିଲା ।

ଝଡ଼ ଆସିଛି । ସେଇ ଭିତରେ ଅମିନା କୁଆଡ଼େ ଗଲା । ସାନ ପିଲାଟା ମାଙ୍କଡ଼ ପିଲାପରି ଛାତିଟାକୁ ଜଡ଼ାଇ ଧରିଛି । ତାର ଛିଣ୍ଡା ଶାଢ଼ିରେ ସମସ୍ତ ଅଙ୍ଗ ତାର ଦିଶୁଛି ।

ଶାଢ଼ିଟାକୁ ଦୋକାନ ଭିତରକୁ ପକାଇ କହିଲା ମୋତେ ଲୁଙ୍ଗି ଦିଅ– ଲୁଙ୍ଗି । ସେ କମ୍ ଦାମ୍ ହେଉ ପଛେ । ସେତକ ଧରି ସେ ଫେରିଲା ।

ଉଷ୍ମାନ ବଡ଼ ବିବ୍ରତରେ ପଡ଼ିଲା । ଅମିନା କୁଆଡ଼େ ଗଲା, ଆତ୍ମହତ୍ୟା କରିବାକୁ ନୁହେଁ ତ ? ମନ ଭିତରେ ତାର ଶତପ୍ରଶ୍ନ ଚେଇଁଛି । ସେ ଖାଲି ବିଡ଼ି ଖାଉଛି । ବର୍ଷନ୍ତ ଆକାଶ ଆଡ଼କୁ ଚାହୁଁଛି ।

–ଅମିନା, ସେ ଆଶ୍ୱସ୍ତ ହେଲା । ଅମିନା ଉଷ୍ମାନକୁ ଟାଣିନେଲା । ଭିତରକୁ ଗଲା । ଉଷ୍ମାନ ଅମିନାର ଓଦା ବାଳ ପୋଛି ଦେଉଥିଲା ।

ଅମିନା ଓ ଉଷ୍ମାନ ସେଇ ନୂଆ ଲୁଙ୍ଗିଟା ଭିତରେ ମୁହଁକୁ ମୁହଁ ଯୋଖି କିଛିଟା ଉତ୍ତାପ ସୃଷ୍ଟି କରୁଥିଲେ ।





ଲେଖକଙ୍କ ବିଷୟରେ......

ରାଇରଙ୍ଗପୁର (ମୟୂରଭଞ୍ଜ) ନିବାସୀ ସ୍ୱର୍ଗତ ଯୋଗୀନ୍ଦ୍ର ପଟ୍ଟନାୟକଙ୍କ ବହୁମୁଖୀ ପ୍ରତିଭାର ପରିଚୟ ଛାତ୍ର ଜୀବନରୁ ମିଳିଥିଲା । ପରବର୍ତ୍ତୀ କାଳରେ ସେ ଜଣେ ଦକ୍ଷ ଅନୁବାଦକ ଓ ବଳିଷ୍ଠ ଗାଳ୍ପିକ ଭାବରେ ସୁନାମ ଅର୍ଜନ କରିଥିଲେ । ଏହା ବ୍ୟତୀତ ସେ ନାଟକ ଓ ଆଦିବାସୀ ସଂସ୍କୃତି ବିଷୟରେ ଅନେକ ପ୍ରବନ୍ଧ ରଚନା କରିଥିଲେ । ତାଙ୍କ ରଚିତ 'ଜନନୀ ଜନ୍ମଭୂମି' ନାଟକ ୧୯୬୪ ମସିହାରେ ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଥିଲା । ସେ ଫକୀରମୋହନ କଲେଜରେ ଛାତ୍ର ଥିଲାବେଳେ ନିତ୍ୟାନନ୍ଦ ମହାପାତ୍ରଙ୍କ ଦ୍ୱାରା 'ଡଗର' ପତ୍ରିକା ସମ୍ପାଦନରେ ସଂଶ୍ଳିଷ୍ଟ ଥିଲେ । କିଛିଦିନ ପାଇଁ ଆକାଶବାଣୀର ସାମୟିକ ଘୋଷକଭାବେ ମଧ୍ୟ ସେ କାର୍ଯ୍ୟ କରିଥିଲେ । ତାଙ୍କଦ୍ୱାରା ଅନୁବାଦିତ ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ୩୬ଟି ପୁସ୍ତକ ଏବେ ମଧ୍ୟ ବେଶ୍ ପରିଚିତ । ତାଙ୍କର ଗଳ୍ପଗୁଡ଼ିକ ବିଭିନ୍ନ ସମୟରେ 'ଡଗର', 'ଅଗ୍ରଣୀ', 'ମୌସୁମୀ', 'କୁଙ୍କୁମ' ଓ 'ଆସନ୍ତାକାଲି' ପତ୍ରିକାରେ ପ୍ରକାଶିତ ହୋଇଥିଲା । ବିଂଶ ଶତାବ୍ଦୀର ପଞ୍ଚମ ଦଶକରେ ଯୋଗୀନ୍ଦ୍ର ପଟ୍ଟନାୟକ ଜଣେ ଶକ୍ତିଶାଳୀ ଗାଳ୍ପିକ ଥିଲେ ବୋଲି କହନ୍ତି ତାଙ୍କ ସାନଭାଇ ଓ ଗାଳ୍ପିକ ରବି ପଟ୍ଟନାୟକ । ତାଙ୍କଦ୍ୱାରା ରଚିତ ଅନେକ ଗଳ୍ପ ଭିତରୁ ୩୦ଟି ଗଳ୍ପର ସଂକଳନ ଏ ପୁସ୍ତକରେ କରାଯାଇଛି ।



ସାହିତ୍ୟ ସଂଗ୍ରହ ପ୍ରକାଶନ


ISBN 81-8246-048-5
9 788182 460485